# ଜଣେ ସ୍ୱାଧୀନତା ସଂଗ୍ରାମୀର ଡାଏରୀ




ମୂଳ ଲେଖା : ରାଜେନ୍ଦ୍ର ପ୍ରସାଦ ଖେତ୍‌ୱାତ

ଅନୁବାଦ : ଭାରତ ଭୂଷଣ ମହାନ୍ତି

# ଜଣେ ସାଧାରଣ କିଶୋରର ଡାଏରୀ

ମୂଳଲେଖା :
ରାଜେନ୍ଦ୍ର ପ୍ରସାଦ କ୍ଷେତାୱାତ୍

ଓଡ଼ିଆ ଅନୁବାଦ :
ଭରତ ଭୂଷଣ ମହାନ୍ତି

ମହାନଦୀ ବୁକ୍ସ୍
ଭୁବନେଶ୍ୱର ॥ ୧୯୯୧

ଛେଣି ଟଙ୍କା ମାତ୍ର

## ॥ ଭୂମିକା ॥

କିଛି ବର୍ଷ ତଳେ ମୁଁ ଆଚାର୍ଯ୍ୟ ରଜନୀଶଙ୍କ ଦ୍ୱାରା ଲିଖିତ 'ତାଓ ଉପନିଷଦ' ନାମକ ଗୋଟିଏ ବହି ପଢ଼ିଥିଲି । ଯେଉଁଥିରେ ଲାଓତ୍ସେଙ୍କ ଜୀବନ ଦର୍ଶନ ବିଷୟରେ ଆଲୋଚନା ହୋଇଛି । ଲାଓତ୍ସେଙ୍କ ଦ୍ୱାରା ଲିଖିତ ଗୋଟିଏ ପୁସ୍ତକରେ ଲାଓତ୍ସେ ନିଜେ ଲେଖିଛନ୍ତି, "ଯାହା ସତ୍ୟ ତାହା ପ୍ରକାଶ ହୋଇ ପାରେନା । ଯାହା ପ୍ରକାଶ କରାଯାଏ ତାହା ସତ୍ୟ ନୁହେଁ ।" କିନ୍ତୁ ମୋର ଜୀବନରେ ଏକଥା ଠିକ୍ ବିପରୀତ ହୋଇଛି । କାରଣ ମୁଁ ମୋର ଡାଏରୀରେ ଯାହା ଯାହା ଲେଖିଛି, ସବୁ ସତ୍ୟ କଥା ଲେଖିଛି । ମୋ ଜାଣିବାରେ ବିନ୍ଦୁଏ ମାତ୍ର ମିଥ୍ୟା କଥା ଲେଖିନି । ଏକଥା ସମ୍ଭବ ହୋଇଛି ଏଇଥିପାଇଁ, ଯେ ମୁଁ ଯେତେବେଳେ ସ୍କୁଲରେ ପଢୁଥିଲି, ଅର୍ଥାତ୍ ମୋର ବୟସ ଯେତେବେଳେ ୧୪।୧୫ ବର୍ଷ, ସେତେବେଳେ ମୁଁ ଗୋଟିଏ ଲିପି ଆବିଷ୍କାର କରିଥିଲି ଯେଣୁ ମୋର ଡାଏରୀ କେହି ପଢି ପାରିବେ ନାହିଁ । ଲଜ୍ଜା ଏବଂ ଭୟ ଯୋଗୁ ବଙ୍ଗଳା, ହିନ୍ଦୀ । ଅସମୀୟାରେ ଏ ସବୁ କଥା ସବୁ ଲେଖିବାଟା ମୋ ଦ୍ୱାରା ସମ୍ଭବ ନଥିଲା, ଏବଂ ବୋଧହୁଏ କାହାଦ୍ୱାରା ସମ୍ଭବ ନୁହେଁ ।

ମୁଁ ଯେତେବେଳେ ବୋଧହୁଏ ଅଷ୍ଟମରେ ପଢୁଥିଲି, ତେବେ ମୋର ଶିକ୍ଷକ ନୁରୁଲ୍ ହକ୍ ଶିକାରୀ ଆମମାନଙ୍କୁ କହୁଥିଲେ ଯେ, "କେହି ଯଦି ଡାଏରୀ ଲେଖିପାରେ, ତା'ହେଲେ ଏହି ଡାଏରୀ ବୃଦ୍ଧ ବୟସରେ ଖୁବ୍ ଆନନ୍ଦ ଦେଇପାରେ ।" ଏକଥା ମୋତେ ଖୁବ୍ ସ୍ପର୍ଶ କରିଥିଲା । ତା'ପରେ ମୁଁ ଡାଏରୀ ଲେଖିବାର ସିଦ୍ଧାନ୍ତ ନେଲି ।

ମୁଁ ଯେତେବେଳେ ଛୋଟ ଥିଲି, ତେବେ ମୋର ବାବା, ମୋର ବଡ଼ ଭାଇଙ୍କୁ କହୁଥିବା ମୁଁ ଶୁଣିଲି ଯେ ମୋର ବାବା ଯେତେବେଳେ କିଶୋର, ସେହି ସମୟରେ କୌଣସି କାରଣବଶତଃ ସେ ଗୋଟିଏ ନିଜସ୍ୱଲିପି ଆବିଷ୍କାର କରିଥିଲେ । ଏକଥା ଶୁଣି ମୋ ମନରେ ପ୍ରେରଣା ଜାଗିଥିଲା ।

ମୋର ଜନ୍ମ ୧୯୫୧, ୨ ନଭେମ୍ବରରେ ଆସାମର ଧୁବୁରୀ ଜିଲ୍ଲାସ୍ଥ ଗୋଲକଗଞ୍ଜ ଗ୍ରାମରେ ହୋଇଥିଲା । ମୁଁ ଯେଉଁଦିନ ଡାଏରୀ ଲେଖିଲି ମୋର ନିଜସ୍ୱ ଲିପିରେ, ସେଦିନ ଥିଲା ୧୯ ଅଗଷ୍ଟ ୧୯୬୭ ମସିହା ଶନିବାର । ସେଦିନ ମୋର ବୟସ ହୋଇଥିଲା ପ୍ରାୟ ୧୫ ବର୍ଷ, ୯ ମାସ, ୧୭ ଦିନ ।

ମୋର କିଶୋର ବୟସର ଡାଏରୀ ପଢି ମୋର ପାଠକ ମାନେ ମୋତେ ଘୃଣା କରିବେ କି ଭଲ ପାଇବେ, ଜାଣେନି । ତଥାପି ଭଲ ପାଇବା ଓ ଘୃଣା ଦୁଇଟାକୁ

ଭ୍ରୂକ୍ଷେପ ନକରି ମୋର ଡାଏରୀକୁ ସମ୍ପୂର୍ଣ୍ଣ ଭାବରେ ପ୍ରକାଶ କରିଦେଲି । ଘଟଣା ସବୁ ସତ୍ୟ, ଲୋକମାନଙ୍କର ନାଆଁ, ଠିକଣା, ସବୁ ସତ୍ୟ । ମୋର କିଶୋର ବୟସର ୧୯ ଅଗଷ୍ଟ ୧୯୬୭ ମସିହାରୁ ଆରମ୍ଭ କରି ୨ ଜାନୁଆରୀ ୧୯୭୦ ପର୍ଯ୍ୟନ୍ତ ।

ବର୍ତ୍ତମାନ ମୁଁ ମୋର ପ୍ରିୟ ପାଠକ ମାନଙ୍କର ପ୍ରତିକ୍ରିୟା ଦେଖିବି । ତା'ପରେ ମୁଁ ମୋର ଅବଶିଷ୍ଟ ଡାଏରୀକୁ ପ୍ରକାଶ କରିବାକୁ ଚେଷ୍ଟା କରିବି ।

ମୋର କିଶୋର ବୟସର ଡାଏରୀରେ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଏତେ ପରିପକ୍ୱ ହୋଇନି, ଏବଂ ହେବା ସମ୍ଭବ ନୁହେଁ । ତଥାପି ମୋର ଡାଏରୀଟି ପଢି ଅନେକେ ବୋଧହୁଏ ନିଜ ନିଜର କିଶୋର ବୟସକୁ କିଛି ସମୟ ପାଇଁ ଫେରି ଯାଇପାରିବେ ।

ବର୍ତ୍ତମାନ ପ୍ରଶ୍ନ ଉଠିପାରେ ଯେ ମୁଁ କାହିଁକି ଓଡ଼ିଆ ଭାଷାରେ ମୋର ଡାଏରୀକୁ ପ୍ରକାଶ କଲି । କାରଣ, ଅସମୀୟା, ହିନ୍ଦୀ, ଇଂରାଜୀ, ବଙ୍ଗଳାରେ ମୋର ଡାଏରୀ ପ୍ରକାଶ କରିବାକୁ ସାହସ ନଥିଲି । କାଳେ ମୋର ଡାଏରୀଟି ମୋ ଘରର ଲୋକ-ମାନଙ୍କ ହାତକୁ ଆସି ଯାଇପାରେ । ଭବିଷ୍ୟତରେ ମୋର ସାହସ ହେଲେ ବୋଧହୁଏ ମୋର ଡାଏରୀକୁ ଏଇ ସମସ୍ତ ଭାଷାରେ ପ୍ରକାଶ କରିପାରେ ।

କେଇ ମାସ ତଳେ ଓଡ଼ିଶାର କଟକ ଜିଲ୍ଲା ଅନ୍ତର୍ଗତ ବଡ଼ପଡ଼ା ଗ୍ରାମର ଯୁବକ ଶ୍ରୀ ଭାରତ ଭୂଷଣ ମହାନ୍ତି, ଗୋଲାକଗଞ୍ଜର 'ଚିଲାରାଇ' କଲେଜରେ ଇଂରାଜୀ ବିଭାଗର ଅଧ୍ୟାପକ ଭାବରେ ଯୋଗ ଦେଇଥିଲେ । ତାଙ୍କ ସହିତ ମୋର ପରିଚୟ ହୁଏ ଏବଂ ବନ୍ଧୁତ୍ୱ ହୁଏ । ଆସ୍ତେ ଆସ୍ତେ ମୋର ଡାଏରୀ ବିଷୟରେ ଆଲୋଚନା କଲି । ତାଙ୍କଠାରୁ ମୁଁ ପ୍ରେରଣା ପାଇଲି ଏବଂ ମୁଁ ମୋର ଡାଏରୀ ପ୍ରକାଶ କରିବା ବିଷୟରେ କଳ୍ପନା ଜଳ୍ପନା କରିବାକୁ ଲାଗିଲି । ତାପରେ ଶ୍ରୀ ଭାରତ ଭୂଷଣ ମହାନ୍ତିଙ୍କର ଜଣେ ବନ୍ଧୁ ଶ୍ରୀ ପବିତ୍ର ଦେବତା ଆସାମରେ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲେ । ସେ ମଧ୍ୟ ମୋତେ ପ୍ରେରଣା ଦେଇଥିଲେ । ପ୍ରଥମେ ଶ୍ରୀ ଦେବତା ମୋର ଡ଼ାଏରୀ ଅନୁବାଦ କାମ ଆରମ୍ଭ କରିଥିଲେ । କିନ୍ତୁ କିଛି ଦିନ ଅନୁବାଦ କରିବା ପରେ ସେ କୌଣସି କାରଣ-ବଶତଃ ଉଦାସୀନ ହୋଇଗଲେ ଏବଂ ଅନୁବାଦ କାମ ବନ୍ଦ ରହିଲା । ପରେ ଶ୍ରୀ ଭାରତ ଭୂଷଣ ମହାନ୍ତି ମୋର ଡାଏରୀ ଅନୁବାଦ କାର୍ଯ୍ୟ ଅବ୍ୟାହତ ରଖିଲେ । ବାସ୍ତବରେ ଶ୍ରୀଯୁକ୍ତ ମହାନ୍ତିଙ୍କର ପ୍ରେରଣା, ନିଷ୍ଠା, ପରିଶ୍ରମ ଦ୍ୱାରା ମୋର ଡାଏରୀ ପ୍ରକାଶ କରିବାର ସ୍ୱପ୍ନ ସାର୍ଥକ ହୋଇଛି । ତେଣୁ ମୁଁ ତାଙ୍କୁ ଏଇ ପୁସ୍ତକଟିକୁ ସମର୍ପଣ କରୁଛି ।

ମୋର ବିଶ୍ୱାସ, ଭବିଷ୍ୟତରେ ମନୋବୈଜ୍ଞାନିକମାନେ ମୋର ଡାଏରୀରୁ

ଅନେକ ତଥ୍ୟ ସଂଗ୍ରହ କରିପାରିବେ । ମୁଁ ତାଏଙ୍ଗ ଲେଖିବାରେ ମୋର ଶିକ୍ଷକ ଶ୍ରୀଯୁକ୍ତ ଅଭୟ ଚରଣ ପିଲଙ୍କ ପାଖରୁ ଉତ୍ସାହ ପାଇଛୁ । ମୋର ବନ୍ଧୁ ଶ୍ରୀଯୁକ୍ତ ପ୍ରଣବ ଆଗୃହିଙ୍କ ଠାରୁ ମଧ୍ୟ ପ୍ରେରଣା ପାଇଛୁ ।

ପ୍ରିୟ ପାଠକମାନଙ୍କର ମୂଲ୍ୟବାନ ମତାମତ ଅପେକ୍ଷାରେ ରହିଲି ।

ରାଜେନ୍ଦ୍ର ପ୍ରସାଦ କ୍ଷେତ୍ରପାଳ

ଆସାମ

ତା ୩ । ୧୦ । ୮୧



॥ ୧୯ । ୮ । ୭୭ : ଶନିବାର ।

ଗତ ପାଞ୍ଚ ବର୍ଷ ବୟସରୁ ହେଲା ମୋତେ ଗୋଟିଏ ମାରାତ୍ମକ ବେମାରି ହୋଇଛି । ଏହି ବ୍ୟାଧି ଯୋଗୁଁ କ୍ରମେକ୍ରମେ ଶରୀର ଅବଶ ହୋଇଯାଉଛି । ଏହି ରୋଗ ମୋର ବଡ଼ ଭାଇଙ୍କର ଅଛି, ସେ ବହୁତ ଡାକ୍ତରଙ୍କୁ ଦେଖାଇଛନ୍ତି, କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ କୌଣସି ଫଳ ହୋଇନାହିଁ । ମୁଁ ମୋର ବେମାରି କଥା କାହାକୁ କହୁନାହିଁ, କାହିଁକି ନା, କହିଲେ ବାପା ମା'ଙ୍କର ଚିନ୍ତା ବଢ଼ିବ ।

ପ୍ରାୟ ବର୍ଷେ ହେଲା ଗୃପ୍ତାକାଟରେ ଜଣେ ଦଶବାର ବର୍ଷର ପିଲା ସବୁ ରୋଗରୁ ମୁକ୍ତି ପାଇଁ ତେଉଁରିଆ ଦେଉଛି । ଶୁଣିବା ପାଇଁ ମିଳେ ଯେ, ପିଲାଟି ଈଶ୍ୱରଙ୍କଠାରୁ ବରଦ ପାଇଅଛି । ମୁଁ ବି ଆଜି ତେଉଁରିଆ ଆଣିବା ପାଇଁ ବାହାରିଲି । ମୋ ସାଙ୍ଗରେ ଯାଇଥିଲେ, ଗୋପାଳ, ଗୋବିନ୍ଦ, ନନ୍ଦଲାଲ ଓ ଲାଲୁ ଘୋଷ । ଆମେ ସମସ୍ତେ ଟିକେଟ ନ କରି ରେଳଗାଡ଼ିରେ ଉଠିଲୁ । ଏଇଟି ମୋର ବିନା ଟିକେଟ୍‌ରେ ପ୍ରଥମ ଯାତ୍ରା ।

॥ ୨୦ । ୮ । ୭୭ : ରବିବାର ॥

ରାତି ପ୍ରାୟ ଗୋଟାଏ ବେଳେ ଆମେ ଗୃପ୍ତାକାଟାରେ ଆସି ପହଞ୍ଚିଲୁ । ତେଉଁରିଆ ଆଣିବାପାଇଁ ସେଠାରୁ ପୁଣି ପ୍ରାୟ ଆଠ ମାଇଲ ପାଦରେ ଚାଲି ଯିବାକୁ ହୁଏ ।

ପୂର୍ଣ୍ଣିମା ରାତି । ସମ୍ମୁଖରେ ପାହାଡ଼ ! ସତେ ଯେପରି ଜହ୍ନ ଆମକୁ ଦେଖି ଲାଜରେ ପାହାଡ଼ଉପରେ ଥିବା ଗଛ ଉହାଡ଼ରେ ମୁହଁରେ ଓଢ଼ଣୀ ପକେଇଛି !

ଆମେ ଅଧାଚାମରା ହୋଇ ହୋଇ ରାତି ତିନିଟା ବେଳେ ନିର୍ଦ୍ଦିଷ୍ଟ ଜାଗାରେ ପହଞ୍ଚିଲୁ । ସେଠାରେ ପହଞ୍ଚି ମା' ଦେଇଥିବା ରୁଟି ଓ ଚୁଡ଼ା ଖାଇ ବିଶ୍ରାମ ନେଲୁଁ । ଘଣ୍ଟାରେ ଉଠି ଇଆଡ଼େ ସିଆଡ଼େ ବୁଲିଲୁ । ତା'ପରେ ଯେଉଁଠି ତେଉଁରିଆ ଦିଆଯାଏ, ସେଠାକୁ ଗଲୁ । ବହୁତ ଭିଡ, ପାଞ୍ଚ ଛଅହଜାର ମଣିଷ । କୌଣସି ପ୍ରକାରେ ଠେଲପେଲି ସାମ୍ନାକୁ ଅସିଲୁ, ତା'ପରେ ଗୋଲକଗଞ୍ଜର ଜଣେ ସିପାହୀର ସାହାଯ୍ୟ ନେଇ ଭିତରକୁ ଯାଇ କୋଡ଼ିଏ କୋଡ଼ିଏ ପଇସା ଦେଇ ଗୋଟିଏ ତେଉଁରିଆ କିଣିଲୁ ।

ତା'ପରେ ବସ୍‌ରେ ବଂଗାଇଗାଓଁ ଆସିଲୁ । ସେଠାରେ ଆମର ଆଲୁମିନିୟମ୍ ବାସନର ଦୋକାନ ଅଛି । ସେଠାରେ ଖାଇପିଇ ବିଶ୍ରାମ କଲୁ । ତା'ପରେ ବଜାରରେ ବୁଲିବା ପାଇଁ ଗଲୁ । ଜଗଦୀଶ ଚନ୍ଦ୍ର ଘୋଷ କୃତ ଗୋଟିଏ ଗୀତା କିଣିଲି । ଅବଶ୍ୟ ଆରବ୍ୟ ଉପନ୍ୟାସ ନ କିଣି ଗୀତା କିଣିବାରୁ ଗୋପାଳ ଅଳ୍ପଅଳ୍ପ ମନ ଉଣାକଲା ।

ଦିନ ଅଢ଼େଇଟାବେଳେ ଗୋଲକଗଞ୍ଜ ଫେରି ଆସିବା ପାଇଁ ବାହାରିଲୁ । ଏଥରର ମଧ୍ୟ ଟିକେଟ କିଣିଲୁ ନାହିଁ । ବାଟରେ ବହୁତ T T I ଆମର ପିଛା କରିଥିଲେ, କିନ୍ତୁ ଆମକୁ ଧରିପାରିଲେ ନାହିଁ । ଏଇ ଚବିଶ ଘଣ୍ଟାରେ ଆମେ ଘଣ୍ଟାଏ ମଧ୍ୟ ଶୋଇ ନ ଥିଲୁ । ଘରକୁ ଆସି ରାତି ଆଠଟା ବେଳେ ଶୋଇ ପଡ଼ିଲୁ ।

॥ ୨୧ । ୮ । ୬୭ : ସୋମବାର ॥

ସକାଳେ ସାତଟା ବେଳେ ନିଦରୁ ଉଠିଲି । ହାତମୁହଁ ଧୋଇ ଚା'ପାଣି ଖାଇ ଅଳ୍ପ ପଢ଼ିଲି, ଦଶଟା ବେଳେ ଖାଇପିଇ ବାରଟା ବେଳେ ପୁଣି ଶୋଇ ପଡ଼ିଲି । ତିନଟା ବେଳେ ଉଠିଲି । ଚା'ପାଣି ଖାଇ ଅଳ୍ପ ଜଳଯୋଗ କରି, ବୁଲିବାପାଇଁ ଗଲି, ଏଗାରଟା ବେଳେ ଶୋଇ ପଡ଼ିଲି ।

॥ ୨୨ । ୮ । ୬୭ : ଶନିବାର ॥

ସକାଳ ସାତଟାରେ ଉଠିଲି, ଚା' ପାଣିଖାଇ ପଢ଼ିବା ପାଇଁ ବସିଲି । ପାଖରେ ମୋର ବାଲ୍ୟଗୁରୁ ଶ୍ରୀଯୁକ୍ତ ରଜନୀକାନ୍ତ ରାୟ ମୋର ଛୋଟ ଭାଇମାନଙ୍କୁ ପଢ଼ାଉଥିଲେ ।

କଥାପ୍ରସଙ୍ଗରେ ରଜନୀ ମାଷ୍ଟର ମୋତେ କହିଲେ, "ଆଜି ଆମ ଘରକୁ ଜଣେ ଗଣକ ଆସିବେ ।" ମୁଁ କହିଲି "ତା'ହେଲେ ମୁଁ ହାତ ଦେଖେଇବି ।"

ରଜନୀ ମାଷ୍ଟର କହିଲେ "ଠିକ୍ ଅଛି, ଯିବୁ" ।

ସ୍କୁଲ ଛୁଟୀ ହେବାପରେ ମୁଁ ଓ ଗୋବିନ୍ଦ 'ଗଣକ ପାଖରେ ହାତ-ଦେଖେଇବା ପାଇଁ ରଜନୀ ମାଷ୍ଟରଙ୍କ ଘରକୁ ଯିବାକୁ ବାହାରିଲୁ । କିନ୍ତୁ ଗଣକ ଜଣକଙ୍କୁ ବାଟରେ ପାଇଲୁ । ତ'ପରେ ମାର୍କେଟିଙ୍ଗ୍ ଜାଗାରେ ହାତ ଦେଖେଇଲୁ । ହାତଦେଖି ସେ କହିବାକୁ ଆରମ୍ଭ କଲେ :

[(୧) ତୁମ ହାତରେ ଟଙ୍କା ତ ଅନେକ ଆସିବ, କିନ୍ତୁ ସବୁ ଖର୍ଚ୍ଚ ହୋଇଯିବ । (୨) ତୁମେ ମାଷ୍ଟର, ପ୍ରଫେସର ବା ସେଇ ଧରଣର ଗୁରୁ ହେବ । (୩) ଛବିଶ

ବର୍ଷ ବୟସ ପର୍ଯ୍ୟନ୍ତ ପାଠ ପଢ଼ିବ । (୪) ପଞ୍ଚାଶ ବର୍ଷ ବୟସ ପର୍ଯ୍ୟନ୍ତ ବଞ୍ଚି-ରହିବ । (୫) ତୁମେ ଦର୍ଶନ ଶାସ୍ତ୍ର ପଢ଼ିବ ଓ ଧାର୍ମିକ ହେବ, ବିଜ୍ଞାନୀ ଅଥବା କର୍ମଠ ହୋଇ ପାରିବନାହିଁ । (୬) ଛବିଶ ବର୍ଷ ବୟସ ପରେ ପୃଥିବୀ ଭ୍ରମଣ କରିବ । (୭) ତୁମେ ଅଙ୍କରେ ଦୁର୍ବଳ । (୮) ତୁମର ତିନିବର୍ଷ ବୟସଠାରୁ ସ୍ୱାସ୍ଥ୍ୟଗେଚ ଅଛି ଓ ସେଇଟି ଲାଗି ୨୧ ବର୍ଷ ବୟସ ପର୍ଯ୍ୟନ୍ତ ରହିବ । ଏଇ-ଯୋଗୁଁ ତୁମର ପାଠରେ କ୍ଷତି ହେବ । ଯଦି ତୁମେ 'ପ୍ରବାଳପାଥର'ର ମୁଦ୍ରିକା ପିନ୍ଧିବ, ତା ହେଲେ ଏହାକୁ ଭୟନାହିଁ । ସବୁକିଛି ଠିକ୍ ହୋଇଯିବ । ସେଇ ମୁଦ୍ରିକାର ମୂଲ୍ୟ ସତୁରି ଟଙ୍କା । (୯) ବାହାଘର ଦୁଇଟା, କିନ୍ତୁ ପ୍ରକୃତ ବାହାଘର ଗୋଟାଏ ।

ସେଇ ଗଣକ ଜଣଙ୍କର ନାମ ରମନଗନା ଠାକୁର, ଘର ଧୁବ୍ରିରେ ।

॥ ୯ । ୯ । ୬୭ : ଶନିବାର ॥

ଆଜି ସକାଳ ସାତଟାରେ ଉଠିଲି । ହାତ ମୁହଁ ଧୋଇ ବିସ୍କୁଟି ଖାଇ ପଢ଼ିବା ପାଇଁ ବସିଲି ।

ଆଜିକୁ କେତେଦିନ ହେଲା ମୁଁ ଗୋଟିଏ ଖରାପ କାମରେ ବୁଲୁଛି । ସେଇଟା ହେଲା ବିଜୟା ସମ୍ପର୍କରେ ।

ଆଜି ଦ୍ୱିପ୍ରହର ଦୁଇଟାରେ ମୁଁ ଏବଂ ବାବୁରାମ ତା' ଘରକୁ ଗଲୁ । ବିଜୟା ସାଥିରେ ଆମର ବିଶେଷ ପରିଚୟ ନାହିଁ ।

ଆମେ ଯାଇ ଯେତେବେଳେ ତା' ଘର ସାମ୍ନାରେ ପହଞ୍ଚିଲୁ, ଆମର ଛାତି ଧଡ଼ ଧଡ଼୍ ହେବା ଆରମ୍ଭ କଲା । ଯେତେବେଳେ ତା' ଘରକୁ ଗଲୁ, ସେତେ-ବେଳେ ସେ ବାହାରେ ପଢ଼ାଘରେ ବସିଥିଲା । ସେ ଆମ ସାଥିରେ ଦଶମ ଶ୍ରେଣୀରେ ପଢ଼େ । ଆମେ ଯିବାରେ ସେ ଆମକୁ ପଚାରିଲା, "କାହିଁକି ଆସିଛ" ? ତା' ବାପା କିନ୍ତୁ ଡାକ୍ତର । ମୁଁ କହିଲି "ତୁମେ ବାପା ଏଇନେ କେଉଁଠି" ? ସେ କହିଲା "ନାହାନ୍ତି, ଧୁବ୍ରି ଯାଇଛନ୍ତି ।" ବିଜୟା ଆମକୁ ବସିବା ପାଇଁ କହିଲା; ଆମେ ବସିଲୁ । ମୁଁ ତାକୁ ଆସାମିସ୍ୱାର ନୋଟ୍‌ଟା ଦେବାପାଇଁ ଦେବାକୁ କହିଲି । ଏହିଭଳି ତା ସାଥିରେ କଥାବାର୍ତ୍ତା ଜମେଇଲୁ ।

କିଛି ସମୟ ପରେ ବାବୁରାମ ଚାଲିଆସିଲା । ବିଜୟା ମୋତେ ଦୁଇତିନୋଟି ଗୀତ ଶୁଣେଇଲା । ତା' ପରେ ଅନେକ ସମୟ ପର୍ଯ୍ୟନ୍ତ ତା' ସାଥିରେ ଗଳ୍ପକଲି କିଛିକ୍ଷଣ ପରେ ମୁଁ ବିଦାୟ ନେଲି । ସେ ମୋତେ ଆଉଥରେ ଆସିବା ପାଇଁ କହିଲା । ସେ ମୋ ଆସିବାରେ ଖୁବ୍ ଖୁସୀ ହୋଇଥିଲା ଭଳି ଜଣାପଡ଼ୁଥିଲା ।

॥ ୧୨ ॥

ଆଜି ସ୍ୱଢରେ ମୁଁ ଶୋଇ ଶୋଇ ଭାବୁଛି । ଆଜିର ଘଟଣାଟି ବାସ୍ତବ ନା ସ୍ୱପ୍ନ !

ସତ୍ୟ ଘଟଣା ! — ନା ସ୍ୱପ୍ନ ! — ନା ! ସତ୍ୟ ଘଟଣା ! !

ମୁଁ କଳ୍ପନା ବି କରିପାରିଲିନାହିଁ ଯେ ମୋର ସ୍ୱପ୍ନଟି ବାସ୍ତବ ରୂପ ପାଇବ !

ବର୍ତ୍ତମାନ ମୋ କର୍ଣ୍ଣରେ ତା'ର ମଧୁର କଣ୍ଠର ମଧୁର ସ୍ୱର — ମୋ' ଚକ୍ଷୁ ସାମ୍ନାରେ ବର୍ତ୍ତମାନ ବି ତା'ର ହସ ! — ମୁହଁର ମଧୁର ହସ ! —

॥ ୨୨ । ୧୦ ନଭେ : ଭଦ୍ରକ ॥

ସକାଳେ ସାଢ଼େ ଛଅଟାରେ ଉଠିଲି । ଚା' ପାଣି ଖାଇ ପଢ଼ିବା ପାଇଁ ବସିଲି । ୯·୪୫ରେ ଗାଧୋଇ ଭାତ ଖାଇଲି । ଖାଇସାରି ଜଗଦୀଶ ଚନ୍ଦ୍ର ଘୋଷ କୃତ "କର୍ମବାଣୀ"ର ଗୋଟିଏ ଅଧ୍ୟାୟ ପଢ଼ିଲି । ତା' ପରେ ପ୍ରାୟ ଘଣ୍ଟାଏ ଶୋଇଲି ।

ଆଜି ମୋ ମନ ସଂସାର ପ୍ରତି, ପାର୍ଥିବ ବସ୍ତୁ, ପ୍ରତି ବିରାଗୀ । ଆଜି ମୁଁ ଯେମିତି ନିଜକୁ ଏକୁଟିଆ ମନେ କରୁଛି, ସେତେ ଲାଗୁଛି ଆଜି ଯେପରି କେହି ବି ଏଇ ପୃଥିବୀରେ ନିଜର ନାହିଁ । କାମନା-ବାସନା ସବୁକିଛି ନୀରସ । ସ୍ୱର୍ଗୀୟ ସୁଖକୁ ଆଲିଙ୍ଗନ କରିବା ପାଇଁ ମୋର ମନ, ପ୍ରାଣ ଓ ଅନ୍ତର ବ୍ୟାକୁଳ ! ଉପର ବେଳା ମୁଁ ଗୋଟିଏ କବିତା ଲେଖିଲି :—

କା ସଙ୍ଗେ କରିବି ମୁକ୍ତିର ସଂଗ୍ରାମ
ମୁକ୍ତିଦାତା ! ତୁମେ ମୋତେ ମୁକ୍ତି ଦିଅ ।
ତୁମ ବିନୁ ନାହିଁ ମୋର ଗତି
ଆତ୍ମୀୟ ସ୍ୱଜନ ବନ୍ଧୁବାନ୍ଧବ ;
ଅଛନ୍ତି; ସବୁ କିନ୍ତୁ କୃତ୍ରିମ ! ! !
ସ୍ୱାର୍ଥର କୋଳେ ଖେଳା କରନ୍ତି ।
ଇନ୍ଦ୍ରିୟଙ୍କ ଭୃତ୍ୟ ଏଇ ଦେହଟିରେ, ଏବଂ ଏଇ ନଶ୍ୱର ସଂସାରେ
ରହିପାରୁନି ମୁହୂର୍ତ୍ତେ ବି ମୁଁ !

× × ×

ଆଜି ମୋତେ ଅତୀତଜୀବନର ପର୍ଯ୍ୟାୟ ମନେପଡ଼ୁଛି । ସେଇ ଘଟଣା ସବୁ ମନେପଡ଼ି ଆଜିର ଜୀବନଟି ରସଶୂନ୍ୟ ଓ ଶୁଷ୍କ ଭଳି ପ୍ରତୀତ ହେଉଛି । ଆଜି

ମୋର ମାନସ ସାଗରରେ ଜୁଆର ଉଠିଛି । ସେଇ ଜୁଆରରେ ମୋର ବର୍ତ୍ତମାନ ଜୀବନନ୍ଦମୟ ଭାବଧାରା ବୁଡ଼ିକରି ଅତୀତର ସ୍ୱର୍ଗୀୟ ଛବି ଭାସିଉଠୁଛି ।

× × ×

ଆଜି ମୋର ମନ କେଉଁ ଏକ ଜିନିଷ ପାଇଁ ବ୍ୟାକୁଳ । ସେଇ "ଜିନିଷ ଗୋଟିକ" ଯେ କ'ଣ, ତାହା ମୁଁ କହିପାରିବି ନାହିଁ ।

× × ×

ଦ୍ୱିପ୍ରହରେ ରେଡ଼ିଓରେ ଗୀତ ଶୁଣୁଥିଲି ।
ମା ତୁ ମୁଝେ ଗଲେ ଲଗାଲେ
ମେରେ କୋଇ ନେହିଁ······

ସେଇ ଗୀତର ତାଳେ ତାଳେ ମୋ ଆତ୍ମା ବି ଗାଇବାକୁ ଲାଗିଲା, "ହେ ଭଗବାନ୍ ! ତୁମେ ହିଁ ମୋର ସବୁ କିଛି, ତୁମ ବିନା ମୋର କେହି ବି ନାହିଁ, ତୁମେ ମୋତେ ତୁମ ପାଖକୁ ଡାକିନିଅ ।"

× × ×

ଉପର ବେଳା ଘଣ୍ଟା'ରେ ଖବର କାଗଜ ପଢ଼ିଲି । ସେଇ ଖବର କାଗଜରେ ଥିବା ଦୁଇଟି ବାଣୀ ମୋର ମନକୁ ଛୁଇଁଲା : (୧) "ସ୍ୱୟଂ ନିଜକୁ ଜୟ କରିବାଟା ହିଁ ସବୁଠୁଁ ବଡ଼ ବିଜୟ ଅଟେ ।" (ପ୍ଲାଟୋ)

(୨) "ଅବିଶ୍ୱାସରୁ ଅବିଶ୍ୱାସ ଓ ବିଶ୍ୱାସରୁ ବିଶ୍ୱାସ ଉତ୍ପନ୍ନ ହୁଏ ।"
(ବିନୋବା)

× × ×

ଆଜି ମୋର ଜୀବନ ପ୍ରତି ଗୋଟିଏ ଧିକ୍କାର ସୃଷ୍ଟି ହୋଇଛି ଏବଂ ଏଇ ପୃଥିବୀରେ ମୋତେ ଜନ୍ମ ଦେଇଥିବାରୁ ଭଗବାନଙ୍କୁ ଦୋଷ ଦେଲି । ସାତଟା'ରେ ପଢ଼ିବାପାଇଁ ବସିଲି, ସାଢେ ୯ ଟାରେ ଶୋଇଲି ।

|| ୨୭ । ୧୦ । ୭୭ : ଗୁରୁବାର ||

ଆଜି ମୋତେ କାମରିପୁ ପରାସ୍ତ କରିଛି । ଆଜିଠାରୁ ଚେଷ୍ଟା କରିବି ରିପୁକୁ ଦମନ କରିବା ପାଇଁ । ଆଜିଠାରୁ ମୁଁ ରିପୁଟିର ବିରୁଦ୍ଧାଚରଣ କରିବି । ରିପୁଟି ଯାହା କରିବାକୁ କହିବ, ମୁଁ ତା'ର ବିପରୀତ କରିବି ।

|| ୧୪ ||

|| ୨୭ | ୧୦ | ୭୭ : ଶୁକ୍ରବାର ||

ସକାଳ ଛଅଟାରେ ଉଠିଲି । ନଅଟା ପର୍ଯ୍ୟନ୍ତ ପଢ଼ିଲି ।

× × ×

ମୋ ଶରୀରରେ ଗୁରୁ ପାଞ୍ଚ ବର୍ଷ ହେଲା ମାରାତ୍ମକ ରୋଗଟିଏ ଅଛି । ଦେହ କ୍ରମେ କ୍ରମେ ଅବଶ ହୋଇପଡ଼ୁଛି । ମୋ ବଡ଼ଭାଇଙ୍କର ମଧ୍ୟ ଏଇ ରୋଗଟି ଅଛି । ସେ ବହୁତ ଡାକ୍ତରଙ୍କ ପାଖରେ ଏହା ଦେଖେଇଛନ୍ତି । କିନ୍ତୁ କେହି ବି ଭଲ କରିପାରିଲେ ନାହିଁ । ଏଇ ବ୍ୟାଧିଟି ବ୍ୟାଧିମାନଙ୍କ ଭିତରେ ସବୁଠୁଁ ଖରାପ ବ୍ୟାଧି । ମୋର ଏଇ ରୋଗ କ୍ରମେ କ୍ରମେ ବଢ଼ୁଛି, ଆଉ ଜୀବନର ଆଶା ନାହିଁ । ଯଦି ଅଛି, ତେବେ ବି ଦୁଇତିନି ବର୍ଷ ହିଁ ବଞ୍ଚିପାରିବି । ତଥାପି ବଞ୍ଚିରହିବା ପାଇଁ ଆକାଂକ୍ଷା !.! !

× × ×

ବାବୁରାମ ମୋତେ କହିଲା ଯେ ତାର ଭାଇ ନାନାଧରଣର ବେମାର ଭଲ କରେ । ମୁଁ ତାଙ୍କୁ ଦେଖେଇଲି । ପୁଣି ମୋ ମନରେ ନୂତନ ଜୀବନର, ଆଶାର ସଂଚାର ହେଲା । ସେ କହିଲେ, "ଗୋଟିଏ ତେଉଁରିଆ ଏବଂ ଔଷଧ ଲାଗିବ ।" ତେଉଁରିଆ ଓ ଔଷଧରେ ମୋର ଏକତିରିଶ ଟଙ୍କା ଖର୍ଚ୍ଚ ହେଲା । ମା' ବାପା କାହାକୁ ଏ ଔଷଧ ବିଷୟରେ ଜଣେଇଲି ନାହିଁ । ସେ ପୁଣି କହିଲେ, "ଏଇ ରୋଗଟି ତୁମର କୌଣସି ଶତ୍ରୁ ଲଗେଇଛି ।"

× × ×

ମୁଁ ଶ୍ରେଣୀ ବହୁଦିନରୁ ହାତ ପାଣି ଗୁଡ଼ିକରେ ଗୁରିଅଣା କରି ଜମେଇଛି । ଏବଂ ବର୍ତ୍ତମାନ ମୋ ପାଖରେ ଦୁଇଶ' ତିରିଶ ଟଙ୍କା ଜମା ହୋଇଛି ! ସେଥିରୁ ଆଜି ତେଉଁରିଆ ଓ ଔଷଧ ପାଇଁ ଦେଲି ଏକତିରିଶ ଟଙ୍କା । ଯଦି ଶ୍ରେଣୀ ସମୟରୁ ପଇସା ଜମେଇ ନଥା'ନ୍ତି, ତା'ହେଲେ ଆଜି କେମିତିକା ଅବସ୍ଥାରେ ପଡ଼ିଥାନ୍ତି ?

× × ×

ଆଜି ମୋର କାମ ରିପୁର ପ୍ରାବଲ୍ୟ ବେଶୀ ।

× × ×

ଆଗରୁ ମୁଁ କ୍ଲାସ୍‌ରେ ବେଶୀ ଭଲ ନଥିଲି, କିନ୍ତୁ ବର୍ତ୍ତମାନ ଭଲ ହୋଇଛି । ମାଷ୍ଟର କିନ୍ତୁ ବର୍ତ୍ତମାନ ବି ମୋତେ ଗଧଟିଏ ବୋଲି ଭାବନ୍ତି । ମୁଁ ପାରିବନି ବୋଲି ମାଷ୍ଟର ମୋତେ ପ୍ରଶ୍ନ ନ ପଚାରିବା ଯୋଗୁଁ ମୋତେ ଆଜିକାଲି ଖରାପ ଲାଗେ ।

|| ୨୮ । ୧୦ । ୬୭ : ଶନିବାର ||

ଛଅଟା'ରେ ଉଠିଲି । ଗୁ' ପାଣି ଖାଇ ପଢ଼ିବା ପାଇଁ ବସିଲି ।

× × ×

ସାତଟା'ରେ ଔଷଧ ଖାଇବା ପାଇଁ ବାବୁରାମ ଘରକୁ ଗଲି । ଔଷଧ ଖାଇବା ପରେ ସତକୁ ସତ ଦେହ ଖୁବ୍ ଭଲ ଲାଗିଲା । ଜୀବନରେ ପୁଣି ଝାପସା ଝାପସା ଆଶା ସଞ୍ଚାର ହେଲା । ଦଶଟା ପଞ୍ଚଧାତୁ ଡେଉଁରିଆ କିଣି ବାବୁରାମର ଭାଇକୁ ବନେଇବା ପାଇଁ ଦେଲି । ସେଇ ଡେଉଁରିଆଟିର ଗୁଣ ଏହି ଯେ, ସେଇଟିକୁ ପିନ୍ଧିଲେ କୌଣସି ଶତ୍ରୁ ମୋ ଶରୀରରେ ବେମାର ଲଗେଇ ପାରିବ ନାହିଁ ।

× × ×

ଉପରବେଳା ଚାରିଟା'ରେ ବୁଲିବା ପାଇଁ ବାହାରିଲି । ନଈକୂଳକୁ ବୁଲିବା ପାଇଁ ଯାଇଥିଲି । ସେଠାରେ କେତେଜଣ ପିଲା ମାଛ ମାରୁଥିଲେ । ମୋର ମନରେ ଏମିତି ଭାବନା ଉଠିଥିଲା ଯେ, ଏଇ ନିରୀହ ମାଛମାନଙ୍କ ପରି ଯଦି ଏଇ ପିଲମାନଙ୍କୁ କେତେଟା ବିଶାଳ ବିଶାଳ ଦାନ୍ତଥିବା ରାକ୍ଷସ ଖାଇବା ପାଇଁ ପୃଥିବୀରୁ ଉଠେଇ ନେଇଯାଏ, ସେତେବେଳେ ଏଇ ପିଲାମାନଙ୍କୁ କେମିତି ଲାଗିବ ? ମାଛମାନଙ୍କ ଉପରେ ମୋର ବଡ଼ ଦୟା ହେଲା । ଏବଂ ମୁଁ ମାଛ-ମାନଙ୍କ ଉପରେ ଏପରି ନିଷ୍ଠୁର ବ୍ୟବହାର ବିଷୟରେ ଗଳ୍ପ ଲେଖିବା ପାଇଁ ସିଦ୍ଧାନ୍ତ କଲି । ଏବଂ ମୁଁ ଭାବିଲି, ମୁଁ ଲେଖନୀ ସାହାଯ୍ୟରେ ମଣିଷମାନଙ୍କ ଅନ୍ତରର ମାଛମାନଙ୍କ ପ୍ରତି ଦୟାର ଭାବ ଉତ୍ପନ୍ନ କରିବ ଓ ସେମାନେ ମାଛ-ଖାଇବା ଛାଡ଼ିଦେବେ ।

ସେଇ ନଈ ପଠାରେ ମୋର ଓ ପ୍ରଣବ ଭିତରେ ଏଇ ବିଷୟରେ ତର୍କ ଲାଗିଲା । ପ୍ରଣବ କହେ : ଭାରତର ଆଦି ନାମ ଜମ୍ବୁ । ଆର୍ଯ୍ୟ ଭାଷାର ନାମ ଓ ଆର୍ଯ୍ୟମାନେ ଆସିବା ପୂର୍ବରୁ 'ଭାରତ' ନାମଟି ନଥିଲା । କିନ୍ତୁ ମୁଁ କହିଲି : ଜମ୍ବୁ ନାମଟି ଆର୍ଯ୍ୟମାନଙ୍କର ଆସିବାର ବହୁତ ଆଗରୁ ହିଁ ଅଛି । ସେ ଯୁକ୍ତି ବାଢ଼ିଲା : ଅନାର୍ଯ୍ୟମାନଙ୍କର କୌଣସି ଭାଷା ନଥିଲା । ଏଇଟା ସଂସ୍କୃତ ଭାଷାର ଶବ୍ଦ; କିନ୍ତୁ ସଂସ୍କୃତ ଭାଷାଟି ଆର୍ଯ୍ୟମାନଙ୍କର, ସେଇ ଯୋଗୁଁ ଏଇଟି ଆର୍ଯ୍ୟଶବ୍ଦ । ମୁଁ ଯୁକ୍ତି ଦେଖେଇଲି : ମନେକର, ଏବେ ପାକିସ୍ଥାନର ନାମଟି ଉର୍ଦ୍ଦୁ ଭାଷାରେ ପାକିସ୍ଥାନ ହିନ୍ଦୀ ଭାଷାରେ ପାକିସ୍ଥାନ ଏବଂ ଅନ୍ୟ ଅନ୍ୟ ଭାଷାରେ ମଧ୍ୟ ପାକିସ୍ତାନ । ଏବଂ ଯଦି ବର୍ତ୍ତମାନ ଇଂରେଜମାନେ ପାକିସ୍ତାନ ଆକ୍ରମଣ କରି-ନେଲେ ଏବଂ ପାକିସ୍ତାନର ମଣିଷମାନଙ୍କୁ ସେଠାରୁ ହଟେଇ ଦେଲେ, ତେବେ

ଦୁଇହଜାର ବର୍ଷପରେ ପରେ ପାକସ୍ତାନର ମଣିଷମାନେ କହିବେ କି ଯେ ଏଇଟି ଇଂରେଜ ନାମ ? ତଥାପି ପ୍ରଣବ ମୋ କଥାକୁ ମାନିଲାନାହିଁ । ସେ ନିଜ ଯୁକ୍ତିରେ ଅଟଳ ରହିଲା ।

+ + +

ଆଜି ଜାମ-ସ୍ପୁ ବିବେକର ଜନ୍ମଦିନ । ମୋର ଆଜି ଲେଖକ ହେବାପାଇଁ ଇଚ୍ଛା । ମୁଁ ମାଉଁଷ୍ଟ୍ରିଭ୍ ହୋଇ ବି ମୋର ମନରେ ଯେଉଁ ସବୁ ଭାବ ଉଦୟ ହୁଏ, ସେଇ ଗୁଡ଼ିକ ଅସମୀୟା ଅଥବା ବଙ୍ଗଳାରେ ହୁଏ । ଏଇଟା ଯେ କାହିଁକି ହୁଏ, ସେଇ ନେଇ ମୋ ଓ ପ୍ରଣବ ଭିତରେ ଆଲୋଚନା ହୁଏ । ଆଜି ମୋ ମନ ବେଶ୍ ପ୍ରଫୁଲ୍ଲ ଥିଲା ।

॥ ୨୯ । ୧୦ । ୬୭ : ରବିବାର ॥

ସାତଟା'ରେ ବାବୁରାମ ଘରକୁ ଔଷଧ ଖାଇବାପାଇଁ ଗଲି । ଔଷଧ ଖାଇବାରେ ଦେହ ଖରାପ ହେଲାଭଳି ଲାଗିଲା, ଏବଂ ବାନ୍ତି ଗୁଡ଼ାଏ କଲି ।

ଆଜି ବହୁତ ପରିଶ୍ରମ କଲି । ଆଜି ସମ୍ପୂର୍ଣ୍ଣ ଘରଟି ପରିଷ୍କାର କରାହେଲା । ରାତି ନ'ଟାରେ ଔଷଧ ଖାଇ ଶୋଇ ପଡ଼ିଲି ।

॥ ୨୦ । ୧୦ । ୬୭ : ସୋମବାର ॥

ସାଢ଼େ ଛ'ଟାରେ ଉଠିଲି । ଗ୍ଲ' ପାଣି ଖାଇଲି । ଆଜି ମୋର ଝାଡ଼ା ବହୁତ ପତଳା ହୋଇଛି । ସାତଟା'ରେ ଔଷଧ ଖାଇବାପାଇଁ ବାବୁରାମ ଘରକୁ ଗଲି । ଆଜି ଦେହଟି କାଲି ଅପେକ୍ଷା ଅଳ୍ପ ଭଲ ଲାଗିଲା । ଦଶଟା'ରେ ସ୍କୁଲକୁ ଗଲି । ଆଜି ହିନ୍ଦୀ ଖାତା ଦେଖା ହୋଇଛି । ମୁଁ ପାଇଛି ଶହେରୁ ଏକାବନ । ହିନ୍ଦୀରେ ମୁଁ ଶ୍ରେଣୀରେ ପ୍ରଥମ ହୋଇଛି । ଜ୍ୟାମିତିରେ ମୋର ବହୁତ ଆଗ୍ରହ ଥିଲାଭଳି ଆଜି ଲାଗିଲା ।

+ + +

ଉପର ବେଳା ଅଙ୍କ କଷିବା ପାଇଁ ଗୋବିନ୍ଦ ଘରକୁ ଗଲି । ତିନି ଚାରିଟି ଜ୍ୟାମିତିର ଅନୁସିଦ୍ଧାନ୍ତ ସମାଧାନ କଲି, ଏବଂ ନାନା ଆଳାପ ଆଲୋଚନା କଲି ।

ଆଜି ମୋର ମନ କୋଉଠାରେ ବି ଲାଗିଲା ନାହିଁ । ତଥାପି ସାତଟା'ରେ ପଢ଼ିବା ପାଇଁ ବସିଲି ।

॥ ୩୧.୧୦.୬୭ : ମଙ୍ଗଳବାର ।

ସାତଟାରେ ଉଠିଲି । ଚା'ପାଣି ଖାଇ ବାବୁରାମ ଘରକୁ ଔଷଧ ଖାଇବା ପାଇଁ ଗଲି । ସାଢ଼େ ଦଶଟାରେ ସ୍କୁଲକୁ ଗଲି । ଆଜି ମୁସଲମାନମାନଙ୍କ କୌଣସି ପୂଜା ଯୋଗୁଁ ପ୍ରଥମ ପିରିୟଡ଼ ପରେ ଛୁଟି ହୋଇଗଲା । ମୁଁ, ଗୋବିନ୍ଦ ଓ ସୁଧୀର ଅଙ୍କ କଷିଲୁ ।

ତିନିଟାରେ ଗୋବିନ୍ଦ ଘରକୁ ଗଲି ପଢ଼ିବା ପାଇଁ । ପ୍ରଣବ ମୋ ସାଥିରେ ଗଲା । ଆମେ ଜ୍ୟାମିତି କରିବା ପାଇଁ ବସିଲୁ । ପାଞ୍ଚଟାରେ ମୁଁ, ଗୋବିନ୍ଦ ଓ ନିରଞ୍ଜନ ବୁଲିବା ପାଇଁ ନଈ ପାଖକୁ ଗଲୁ । ନିରଞ୍ଜନ ଯେ କିଛି ଦିନ ପାଇଁ ଗୋଲକଗଞ୍ଜ ଆସିଥିଲେ । ତାଙ୍କର ବଡ଼ଭାଇ ନବଦ୍ୱୀପରେ ଶିକ୍ଷକ ଅଛନ୍ତି । ଆମ ମାନଙ୍କ ମଧ୍ୟରେ ଭୂତ ଗଳ୍ପ କୁହାକୁହି ଆରମ୍ଭ ହେଲା । ନିରଞ୍ଜନ କହିଲେ ଯେ ବହୁତ ଭୂତ ଦେଖିଛନ୍ତି, ପରୀ ଦେଖିଛନ୍ତି ଓ ପରୀ ସାଥିରେ ଗଳ୍ପ କରିଛନ୍ତି । ଆଜି ମୋର ଭୂତ ଦେଖିବା ପାଇଁ ମନ ହେଲା । ମୁଁ ଭୂତ ଦେଖି ନଥିବା ଯୋଗୁ ନିଜକୁ ଦୁର୍ଭାଗ୍ୟ ବୋଲି ଭାବିଲି । ଆଜି ଭ୍ରମଣ କରିବା ପାଇଁ ମୋର ତୀବ୍ର ଇଚ୍ଛା ।

॥ ୧.୧୧.୬୭ : ବୁଧବାର ॥

ଆଜିବି ମୁଁ ମୋର ଇନ୍ଦ୍ରିୟ ଦମନ କରିପାରିଲି ନାହିଁ । ଆଜି ଦୀପାବଳୀ । କିନ୍ତୁ ମୋର ଅନ୍ତରରେ ଦୀପାବଳୀ ଆସିନାହିଁ । ସକାଳେ ସରସ୍ୱତୀ ମା'ଙ୍କୁ ଜ୍ଞାନ ଦେବାପାଇଁ କହିଲି । ଅନେକ ପ୍ରଶ୍ନ ପଚାରିଲି,— ୧) ମୁଁ କ'ଣ ମୋର ଏଇ ଶରୀର ଅଟେ ? ୨) ମୁଁ କେଉଁଠାରୁ କେମିତି ଏଇ ପୃଥିବୀକୁ ଆସିଛି ? ୩) ଈଶ୍ୱର ପ୍ରାପ୍ତିର ପନ୍ଥା କଣ ? ଇତ୍ୟାଦି ।

ଗୋଟାଏ ବେଳେ ଅଙ୍କ କଷିବା ପାଇଁ ଗୋବିନ୍ଦ ଘରକୁ ଗଲି । ସେଠାରେ ଅଙ୍କ କଲି ଓ ନାନା ଧରଣର ଗଳ୍ପ କଲି । ଆଜି ମଧ୍ୟ ନିରଞ୍ଜନ ଭୂତ ଓ ଡକାସୁତ ଗଳ୍ପ କହିବା ଆରମ୍ଭ କଲା ।

ମୁଁ ଏଇବର୍ଷ ଗୋଟାଏ ବି ବାଣ ଫୁଟେଇନାହିଁ । ବାଣର ଗୋଟାଏ ଗୋଟାଏ ଶବ୍ଦ ମୋର ଅନ୍ତରରେ ଆଘାତ ଦେବା ଆରମ୍ଭ କଲା । ଏଇ ଦୀପାବଳୀରେ ଆନନ୍ଦ ନ ଲାଗିବାର ଗୋଟାଏ କାରଣ ବି ଅଛି ······ । ମୁଁ ଯେତେବେଳେ ଗୋବିନ୍ଦ ଘରୁ ବୁଲି ଆସିଲି, ସେତେବେଳେ ମୋ ବାପା ରାଗରେ ପଚାରିଲେ, "ଏତେବେଳ ଯାଏଁ କୋଉଠି ଥିଲୁ ?" ଏଇ ଗୋଟାଏ କଥା ହିଁ ବୋଧେ ଏଇ ଦୀପାବଳୀରେ ମୋର ସମସ୍ତ ଆନନ୍ଦ ଧୂଳିସାତ୍ କଲା । ସାଢ଼େ ଦଶଟାରେ ଶୋଇ ପଡ଼ିଲି ।

॥ ୨.୧୧.୬୭ : ଗୁରୁବାର ॥

ଆଜ କାମରିପୁ ଶକ୍ତିଶାଳୀ । ଟିକେଟା ବେଳେ ବିଜୟ୍କା ଘରେ କେତୋଟି ଇଂରାଜୀ ନୋଟ୍ ଲେଖିବା ପାଇଁ ଗଲି । ଆଜିର ଦିନଟି ପ୍ରାୟ ଭଲରେ କଟିଛି । ବାବୁରାମର ଭାଇକୁ ଔଷଧ ଚିଆରି କରିବାର ପରିଶ୍ରମ ପାଇଁ ଦଶ ଟଙ୍କା ଦେଲି । ବାବୁରାମକୁ ଗୀତାର ମୂଲ୍ୟ ଗ୍ରହଣ କରିଦେଲି । ଆଜି ମୁଁ ସୌନ୍ଦର୍ଯ୍ୟପିପାସୁ ।

॥ ୩.୧୧.୬୭ : ଶୁକ୍ରବାର ॥

କାମରିପୁ ବଡ଼ ପ୍ରବଳ !

॥ ୪.୧୧.୬୭ : ଶନିବାର ॥

କାମରିପୁର ପ୍ରାବଲ୍ୟ !!

॥ ୫.୧୧.୬୭ : ରବିବାର ॥

"ଦୂର ପାହାଡ଼ରେ, ମରୁ ମହିରେ, ନଦୀ କୂଳେ କୂଳେ
ମୋର ମନ ଖୋସୁଛି ଆଜି
ନୀଳ ସାଗରରେ, ଦୂର ଦିଗନ୍ତରେ..............
ପାହାଡ଼ ଜଙ୍ଗଲରେ, ଜୀବଜନ୍ତୁ ପାଖରେ କ୍ରୀଡ଼ାକରେ ।"

ପରୀକ୍ଷା ଆସୁଛି— କୋଡ଼ିଏ ତାରିଖରେ । ମୁଁ ବର୍ତ୍ତମାନ ଅଳ୍ପ ଅଳ୍ପ ପଢ଼ିବା ଆରମ୍ଭ କରିଛି । ଖୁବ୍ ଖରାପ ଲାଗୁଛି । ହସ୍ତମୈଥୁନ କରୁଛି । ଥରେତ ଇନ୍ଦ୍ରିୟକୁ ଦମନ କଲି, କିନ୍ତୁ ଦ୍ୱିତୀୟ ଥର ପାରିଲି ନାହିଁ । ଆଜିଠାରୁ ପ୍ରତିଜ୍ଞା କଲି ଦିନକୁ ତିଶଥର ଗୋମୁଖାସନ କରିବି । ତଥାପି ଏ ରିପୁ ମାନୁନାହିଁ । ମୋ କଥା ଶୁଣୁନାହିଁ । କ'ଣ କରିବି ଭଗବାନ, ତୁମେ ମୋତେ ବଞ୍ଚାଅ । ହେ ରାମ !

॥ ୬.୧୧.୬୭ : ସୋମବାର ॥

ସକାଳ ସାଢ଼େ ଚାରିଟାରେ ଉଠିଲି । ମୁହଁରେ ଅଳ୍ପ ପାଣି ଦେଇ ପଢ଼ିବା ପାଇଁ ବସିଲି । ଆଠଟା ପର୍ଯ୍ୟନ୍ତ ପଢ଼ିଲି । ତାପରେ ବାବୁରାମ ଘରକୁ ଔଷଧ ଖାଇବା ପାଇଁ ଗଲି । ଔଷଧଟା ଥିଲା ଗଛର ଗୋଟାଏ ଚେର । ଆଜି ଶରୀର ଅଳ୍ପ ଭଲ ଅଛି । ଅନ୍ୟ ଅନ୍ୟ ଦିନରେ ବେଶୀ ଲେଖିଲେ ହାତ ବଥେଇଲା ଭଳିଆ ଲାଗେ, କିନ୍ତୁ ଆଜି ବେଶୀ ବ୍ୟଥା କରୁନାହିଁ ।

ନଅଟା ଆମ୍ବୁକୁ ଗଛରୁ କିଛି ଡାଳ କାଟିବା ପାଇଁ ବଗିଚାକୁ ଗଲି । ହାତରେ ଦା'ଟିଏ ନେଲି । ବାଡ଼ର ଆରପଟେ ଜଣେ ଲୋକର ଜମି ଥିଲା । ଗୋଟିଏ ଛୋଟ ଡାଳ ସେଇ ଜମିରେ ପଡ଼ିଲା । ସେଇ କ୍ଷେତର ମାଲିକାଣୀ ମୋତେ ଗାଳି ଦେବାପାଇଁ

ଆରମ୍ଭ କଲି । ସେ ଦେଖିବାପାଇଁ ବହୁତ ସୁନ୍ଦରୀ । ମୁଁ ତା'ର ରୂପରେ ମୋହିତ ହେଲି ଏବଂ ତାଳ ବୋଳିବା ଛାଡ଼ିଦେଲି ।

ଏଗାରଟା ଆଡ଼କୁ ଖାଇସାରି ବିଶ୍ରାମ କରୁଅଛୁ । ଏଇ ସମୟରେ ବାପା ମା'ଙ୍କୁ କହିଲେ, "ଭୂଲଯୀବନର ଚିଠି ଆସିଛି ଏବଂ ସେ ଲେଖିଛି ଯେ, ଯଦି ତାକୁ ଚିଠି ଦିଆଯାଏ, ତା ହେଲେ ସେ ଆସିବ"। ମୁଁ ମା'ଙ୍କୁ ପଚାରିଲି, "ତାକୁ ଡାକିବା କି ? ଯଦି ଡାକିବା ,ତେବେ କେବେ ଡ଼ାକିବା ?" ମୋର ବାପା ବ୍ୟଙ୍ଗାତ୍ମକ ଭାବେ ବିଦ୍ରୂପରେ କହିଲେ, "ତାଙ୍କୁ କହ"। ମୋର ଅନ୍ତରରେ ଏଇ ଦୁଇଟି ଶବ୍ଦ ଆସି ଛୁରୀ ଭଳିଆ ଆଘାତ କଲା ଏବଂ ମୁଁ ପାଟିରେ ଧାବା ଚୌକିରେ ଶୋଇପଡ଼ି ଭାବିବାକୁ ଆରମ୍ଭ କଲି— । "ମୋ କଥାକୁ ଏମିତି କହି କାହିଁକି ଏମାନେ ଉଡ଼ାଇ ଦିଅନ୍ତି ? କାହିଁକି ମୋତେ ସେମାନେ ଏତେ ଖରାପ ପାଆନ୍ତି ? ମୁଁ କ'ଣ ସେମାନଙ୍କର କିଛି ଅନିଷ୍ଟ କରିଛି ? ମୋ ସାଥିରେ ଏଇ ଭଳିଆ କଥା କାହିଁକି କହନ୍ତି ! କାହିଁକି ମୋତେ ଏତେ ବୁଦ୍ଧୁ ବୋଲି ଭାବନ୍ତି ? ମୋର ଭାଇମାନଙ୍କୁ ତ ଏମିତି କେତେବେଳେ ବି କହନ୍ତି ନାହିଁ ବା କେବେ କହନ୍ତିନାହାନ୍ତି । ମୁଁ ମନେ ମନେ ଏହାର କାରଣ ଖୋଜିବା ପାଇଁ ଆରମ୍ଭ କଲି । ମୋତେ ହୁଏତ ସେ ଏକବାର ମୂର୍ଖ ବୋଲି ଭାବନ୍ତି । ମୁଁ ମନେ ମନେ ଭାବିବା ଆରମ୍ଭ କଲି, କେତେବେଳେ ଏଇଘରୁ ଚାଲିଯିବି । ତା'ପରେ ମୁଁ ପ୍ରତିଜ୍ଞା କଲି ଯେ, ଏମାନଙ୍କ ଆଗରେ ମୁଁ ଆଉ କେବେ ବି ମୁହଁ ଖୋଲିବି ନାହିଁ ।

ଦୁଇଟାରେ ବିଜୟ୍ଙ୍କ ଘରକୁ ଗଲି । ଦୁଇ ଗୋଟି କାରଣ ଥିଲା । ୧) ପ୍ରଶ୍ନ ଲେଖିବା ପାଇଁ, ୨) ........ ........

ସନ୍ଧ୍ୟା ଛ'ଟାରେ ପଢିବାପାଇଁ ବସିଲି । ଆଠଟାରେ ଡାଏରୀ ଲେଖିଲି, ସାଢ଼େ ଦଶଟାରେ ଶୋଇପଡ଼ିଲି ।

॥ ୭-୧୧.୬୭ ମଙ୍ଗଳବାର ॥

ଛ'ଟାରେ ଉଠିଲି । ହାତମୁହଁ ଧୋଇ ପଢିବା ଆରମ୍ଭ କଲି । ଆଜି ଇତିହାସ ପଢ଼ିଲି । ସାଢ଼େ ଆଠଟା ବେଳକୁ ପଢିବାରୁ ଉଠି ଗାଧୋଇବା ପାଇଁ ଗଲି । ଖାଇପିଇ ଗୋଟାଏ ବେଳେ ପଢିଲି ଓ ଶୋଇପଡ଼ିଲି ।

ଦୁଇଟା ବେଳେ ବୁଲିବାପାଇଁ ଗଲି । ଆଜି ଗୋପାଳ ଘରକୁ ଯିବାପାଇଁ ଚାହାଁଲି । ଦୁଇ ତିନ ମାସ ହେଲା ଗୋପାଳ ଘରକୁ ଯାଇନାହିଁ । ବାଟରେ ଗୋପାଳକୁ ଦେଖିଲି । ଗୋପାଳକୁ ସାଇକେଲରେ ଉଠେଇ ତା' ଘର ଆଡ଼କୁ ଯିବା ପାଇଁ ଆରମ୍ଭ କଲି । ବାଟରେ ଜଣେ ପୋଲିସ ସାଇକେଲ ଅଟକାଇବା ପାଇଁ କହିଲା । ମୁଁ ସାଇକେଲ ରଖିଲି । ପୋଲିସ କହିଲା ଦୁଇଜଣ ସାଇକେଲରେ ଡବଲ ଚଢ଼ି ଯାଇ ପାରିବେ ନାହିଁ । ଅମେ ତା'ପରେ ଓହ୍ଲେଇ ପାଦରେ ଚାଲିବାକୁ ଆରମ୍ଭ

କଲୁ । ଗୋପାଳ ଘରେ ପ୍ରଣବଙ୍କର ଦେଖା ହେଲା ।

ଦୁଇବର୍ଷ ଆଗର ଘଟଣା ଆଖି ଆଗରେ ଭାସି ଉଠିଲା । ଆମେ ତିନବନ୍ଧୁ ଦୁଇବର୍ଷ ପୂର୍ବେ ଏଇ ନଈ ପାଖକୁ ଆସି କବିତା ଲେଖିଥିଲୁ । କେତେ ଆନନ୍ଦର ଦିନ ଥିଲା ସେଗୁଡ଼ା !!! ମୁଁ ମୋର 'ନଦୀ' କବିତାଟି ସେଠାରେ ହିଁ ଲେଖିଥିଲି ।

ନଦୀ

ହେ ସୁନ୍ଦର ଶସ୍ୟ ଶ୍ୟାମଳା ଧରଣୀ, ତୁମ ଛାତି ଉପରୁ ବହିଅଛୁ ଏଇ ପ୍ରବାହିନୀ
କହ ଥରେ ମୋତେ ହେ ଜଳଧାରା ! ଗଡ଼ି ଗଡ଼ି ଆସୁଅଛ କୋଉଠାରୁ ?
କୁଳୁକୁଳୁ ରାଗିଣୀରେ ହେ ପ୍ରବାହିନୀ, ପାରିବନି କହି ମୁଁ ତୁମ ଯିବ ତୁମେ କେଉଁ
ଦୂର ଦୂରାନ୍ତର ।
ମିଳିଛୁ ବୁକୁରେ ତୁମର କେତେକେତେ ନିର୍ଝରଣୀ, ନାଚିକୁଦି ଆସି ସେଇ ପର୍ବତଶୀର୍ଷରୁ
କେତେ ଶତ ଗୀତ ଗାଇ ମିଶିଯିବ ତୁମେ ସେଇ ଅନନ୍ତ ସାଗରେ ।
ମୋତେ ନେଇଯାଅ ଆହେ ଜୀବନ ତରଙ୍ଗିଣୀ
ଯେଉଁଠାରେ ମଣିଷ ଲଭେ ଚିର ଶାନ୍ତିର ବିଶ୍ରାମ ।

(ଗଙ୍ଗାଧର ନଦୀକୁ ଉଦ୍ଦିଷ୍ଟ କରି ଲିଖିତ)   ଶ୍ରୀ ରାଜେନ୍ଦ୍ର ପ୍ରସାଦ ଫେଡାଓ୍ୱାଲ୍
(୧୯୬୫)

|| ୨୩.୪.୬୮ : ମଙ୍ଗଳବାର ||

୧) ଛଅଟାରେ । ୨) ନା, ୩) ଦଶମଶ୍ରେଣୀର ପରୀକ୍ଷା ସରିଛି । ୪) କରିନାହିଁ, ୫) କାମ ବାସନାକୁ ମନରୁ ଅନ୍ତର କରିବାକୁ ଚେଷ୍ଟା ଚାଲିଛି, ୬) ଧାର୍ମିକ ପୋଥି ପଢ଼ିବା, ୭) ବହୁତ ଥର, ୮) ସ୍କୁଲ ବନ୍ଦ ଅଛି, ୯) ପ୍ରଣବକୁ ଦୁଇଟଙ୍କା ଧାର ଦେଲି, ୧୦) ନା, ୧୧) ନା, ୧୨) ହଁ, ୧୩) ହଁ ।

ମୋର ମାଟ୍ରିକୁଲେଶନ ପରୀକ୍ଷା ମାର୍ଚ୍ଚ ୨୫ରୁ ଶେଷ ହୋଇଯାଇଛି । ବର୍ତ୍ତମାନ ମୋର କୌଣସି କାମ ନାହିଁ । ଜିଲ୍ଲା ପାଠାଗାରରେ ସଦସ୍ୟ ହୋଇଛି, ସେଠାରୁ "ଦି ଭେଦିକ୍ ଏଜ୍" ଓ "ବୈଜ୍ଞାନିକ ଦର୍ଶନ" ନାମକ ଦୁଇଟି ପୁସ୍ତକ ଆଣିଛି ।

ଏଇ କେଇଦିନ ହେଲା (୨୫ ମାର୍ଚ୍ଚରୁ ୨୩ ଅପ୍ରେଲ୍) ପଢ଼ାବହି ଭିତରେ କର୍ମଯୋଗ, ଗୀତା, ବେଦାନ୍ତ-ଦର୍ଶନ, ମନ-ଜୟ, ପ୍ରାଚ୍ୟ ଓ ପାଶ୍ଚାତ୍ୟ ଧର୍ମ, ସଂଯୁକ୍ତା, ଆଗ୍ନେୟର-ପରିଶମନ, ନାନା ପ୍ରହେଳିକା, ରତ୍ନଦ୍ୱୀପ ଆଦି ହେଲା ପ୍ରଧାନ ।

ଏଠାକାର ପୂର୍ବତନ ସ୍ଥାନୀୟ ଏମ୍.ଏଲ୍.ଏ. ଭୂବନ ଚନ୍ଦ୍ର ପ୍ରଧାନ ମୋର ପିତୃସମ ବ୍ୟକ୍ତି ଥିଲେ ଓ ମୋତେ ପୁତ୍ରବତ୍ ସ୍ନେହ ପ୍ରଦାନ କରି ସବୁଦିନ ପାଇଁ କୃତଜ୍ଞ କରିଛନ୍ତି । ତାଙ୍କ ଚରିତ୍ରର ଅନ୍ୟତମ ବୈଶିଷ୍ଟ୍ୟ ଥିଲା ଏହି ଯେ, ସେ ସଦାସର୍ବଦା ନୂଆ ନୂଆ ବହି ଇତ୍ୟାଦି ଦେଇ ମୋ ରୁଚି ପରିବର୍ତ୍ତିତ ଓ ଜ୍ଞାନ ସମୃଦ୍ଧ କରିବା ପାଇଁ

ଚେଷ୍ଟା କରୁଥିଲେ । ଏବେ ଦେ ମୋତେ ସ୍ୱାମୀ ଶିବାନନ୍ଦ ପ୍ରଣୀତ ଖଣ୍ଡିଏ ବହି ଦେଇଥିଲେ । ବହିର ନାମଟି ଅବଶ୍ୟ ମନେନାହିଁ । କିନ୍ତୁ ସେଥିରେ ବିଦ୍ୟାର୍ଥୀମାନଙ୍କ ଚରିତ୍ରଗତ ଉନ୍ନତି ଓ ବୌଦ୍ଧିକ ବିକାଶ ନିମିତ୍ତ ଗୋଟିଏ ଅଧ୍ୟାୟ ଓ କେତେଗୁଡ଼ିଏ ପ୍ରଶ୍ନ ଥିଲା । ସେଇପ୍ରଶ୍ନ ସବୁ ନିଜକୁ ପଚାରି ଓ ସେଗୁଡ଼ିକର ସଠିକ ଉତ୍ତର ନିରୂପଣ କରି ସେଇ ଢାଞ୍ଚାରେ ବିଦ୍ୟାର୍ଥୀମାନେ ନିଜ ଜୀବନକୁ ସଜାଡ଼ି ପାରିବେ ବୋଲି ମୋର ଏବେ ମଧ୍ୟ ବିଶ୍ୱାସ । ପାଠକଙ୍କ ଅବଗତି ନିମନ୍ତେ ଉପରୋକ୍ତ ପ୍ରଶ୍ନ ଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

ପ୍ରତିଦିନ ପ୍ରତ୍ୟେକ ପ୍ରଶ୍ନ ଆଗରେ ନିଜର ଉତ୍ତର ଲେଖିଦିଅ । ଗୋଟିଏ ବର୍ଷ ଭିତରେ ତମେ ତମ ଭିତରେ ମହାନ ପରିବର୍ତ୍ତନ ଉପଲବ୍ଧି କରିବ । ଦୈନନ୍ଦିନ ପାଳନରେ ନିୟମିତତା ରକ୍ଷା କର ।

ପ୍ରଶ୍ନାବଳୀ:—

୧) ଶୋଇ କି କେତେବେଳେ ଉଠିଲ ? ୨) କେତେ ସମୟ ପର୍ଯ୍ୟନ୍ତ ଇଶ୍ୱରଙ୍କୁ ପ୍ରାର୍ଥନା କଲ ? ୩) କ'ଣ ସ୍କୁଲରେ କୌଣସି କାମ ବାକି ଅଛି ? ୪) କ'ଣ ଆଜି ନିଜର ପିତାମାତା ଅଥବା ଶିକ୍ଷକଙ୍କ ଆଦେଶ ଲଙ୍ଘନ କରିଛ ? ୫) କୋଉ ମନ୍ଦ ଅଭ୍ୟାସକୁ ଦୂର କରିବା ପାଇଁ ଚେଷ୍ଟା ଚାଲିଛି ? ୬) କୋଉ ଗୁଣର ବିକାଶ କରୁଛ ? ୭) କେତେଥର ରାଗିଲ ? ୮) କ'ଣ ତୁମେ ତୁମ ଶ୍ରେଣୀରେ ସମୟାନୁବର୍ତ୍ତୀ ହେଉଛ ? ୯) ଆଜି କେଉଁ ନିଃସ୍ୱାର୍ଥପର ସେବା କଲ ? ୧୦) କ'ଣ ଆଜି ଧୂମପାନ କଲ ? ୧୧) କ'ଣ ଖେଳ ଓ ବ୍ୟାୟାମରେ ନିୟମିତ ହେଲ ଓ କେତେ ମିନିଟ ବା ଘଣ୍ଟା ଏଥିରେ ନିୟୋଗ କଲ ? ୧୨) କ'ଣ ଆଜି ନିଜ ଅନ୍ତଃକରଣର ବିରୁଦ୍ଧାଚରଣ କରି କୌଣସି କାମ କଲ ? ୧୩) କ'ଣ କାହାକୁ ନିଜର ମନକଥା ଅଥବା କର୍ମଦ୍ୱାରା ଆଘାତଗ୍ରସ୍ତ କଲ ?

॥ ୨୪।୪।୬୮ : ବୁଧବାର ॥

ଛ'ଟାରେ ଉଠିଲି । ପଢି ବସିଲି । ବିବେକାନନ୍ଦଙ୍କ ଜୀବନୀଟି ପଢି ଶେଷକଲି । ଜଳଖିଆ ପରେ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କର "ଧର୍ମେ ପ୍ରାଚ୍ୟ ଓ ପାଶ୍ଚାତ୍ୟ" ପଢି ବସିଲି । ମୋର ରୁଟିନ୍ ମତେ କାର୍ଯ୍ୟ ଚାଲୁନାହିଁ । ମନ କେଇମାସ ହେଲା ପରିବାର ଅଛି । ଆଜି ସନ୍ଧ୍ୟାରେ ବୁଲିବାପାଇଁ ଯାଇନି । ରାତିରେ ଅଳ୍ପ ଧର୍ମାଲୋଚନା ହେଲା ।

ମନ ଭଗବାନଙ୍କ ପାଇଁ, ଭଲ ଗୁରୁଙ୍କ ପାଇଁ ବ୍ୟାକୁଳ । ମନ ଅନେକ କିଛି ଜାଣିବା ପାଇଁ ଚାହେଁ । ଅନେକ କିଛି ଅନୁଭବ କରିବାକୁ ଚାହେଁ । ଜଣେ ସନ୍ନ୍ୟାସୀଙ୍କର ସନ୍ଧାନ ପାଇଛି । କୁହାଯାଏ ମା କାଳୀଙ୍କୁ ଦେଖିଛନ୍ତି । ତାଙ୍କର କଥା ମୋ ପାଖରେ ପ୍ରଥମେ କହେ ମୋର ଜଣେ ବନ୍ଧୁ; ନାମ ତା'ର ପ୍ରଣବ । ତାଙ୍କୁ

ଦେଖିବାପାଇଁ ଏବଂ ତାଙ୍କ ସଙ୍ଗେ କଥା ହେବା ପାଇଁ ମନ ବ୍ୟାକୁଳ ।

॥ ୨୫।୪।୬୮ : ଗୁରୁବାର ॥

ଆଜି ବେସିକ୍ ଟ୍ରେନିଂ ଅନୁଷ୍ଠାନ ଠାରୁ ୧) ଜ୍ଞାନଗୁରୁ, ୨) ସକ୍ରେଟିସ, ପ୍ଲାଟୋ ଓ ଆରିଷ୍ଟୋଟଲ, ୩) 'ଏ ଫିଲୋସୋଫି ଫର ନେଫା' ଇତ୍ୟାଦି ଭଲ ଭଲ ବହି ମିଳିବାରୁ ମନ ବହୁତ ଆନନ୍ଦିତ ।

॥ ୨୬।୪।୬୮ : ଶୁକ୍ରବାର ॥

ସନ୍ଧ୍ୟାବେଳେ ପ୍ରଣବ ଘରକୁ ବୁଲିବା ପାଇଁ ଗଲି । ପ୍ରଣବର ବାପା ସାଙ୍ଘାତିକ ବେମାର । ଝାଡ଼ାବାନ୍ତି । ଏଗୁଡ଼ା ଦେଖି ମନରେ ଖୁବ୍ ଆଘାତ ଲାଗିଲା । ମଣିଷର ଅବସ୍ଥା ସମ୍ବନ୍ଧରେ ନୂତନ ଅଭିଜ୍ଞତା ହେଲା । ଆମର ଯେତେ ନେତେ ଏଇଭଳିଆ ଦୁଃଖ ଭୋଗ କରିବାର ସୌଭାଗ୍ୟ ହୁଅନ୍ତା ତା'ହେଲେ ଏମାନଙ୍କର ଦୁଃଖ ଭଲଭାବେ ଅନୁଭବ କରିପାରନ୍ତେ ।

॥ ୨୭।୪।୬୮ : ଶନିବାର ॥

ଦୁଇଟା ଟଙ୍କା ପ୍ରଣବକୁ ଦେଇ ସାହାଯ୍ୟ କଲି । ବାବୁରାମ ପାଖରୁ ବି ଟଙ୍କାଏ ନେଇ ପ୍ରଣବକୁ ଦେଇ ଆସିଲି । ମନ ଅଳ୍ପ ଅଳ୍ପ ଅପବିତ୍ର । ଆଶାକରେ, ଆସନ୍ତାକାଲି ଆଉ କିଛି ପବିତ୍ର ହେବ । ଦ୍ୱିପ୍ରହରରେ 'ଜ୍ଞାନଗୁରୁ' ପଢ଼ିଲି । ମନ ଅଶାନ୍ତ ଥିଲା ।

୭।୬।୬୮ : ଶୁକ୍ରବାର ॥

କାମବାସନା ପ୍ରବଳ । ବିଜୟାର ଘରକୁ ଯିବାର କଥା ଥିଲା, କିନ୍ତୁ ଯିବା ହେଲା ନାହିଁ । ବାବୁରାମ ପାଖରୁ ଗୋଟାଏ ଶ୍ରେଷ୍ଠ ବହି "ଯୌବନ ଜୀବନ", ଗୋଟାଏ ...ମିକ ବହିଦେଇ କଣିଲି । କଣିବାର ଉଦ୍ଦେଶ୍ୟ ହେଲା, ବହିଟି ବିଜୟାକୁ ଦେଇ ଏଇ ...ମ୍ବନ୍ଧ ବିଷୟ ଗୁଡ଼ିକରେ ଆଲୋଚନା କରିବା । ମୋର ମାସେ ଦୁଇମାସ ହେଲା ...ଳସୁଆମୀ ଭାବ । କୌଣସି କାମକାର୍ଯ୍ୟରେ ଆଗ୍ରହ ଆସୁନାହିଁ ।

ମନଟା ଭଲ ନାହିଁ । ପରେ ପରେ ତିନି ଗୁରୁବାର ଧରି ସ୍ୱପ୍ନଦୋଷ ହୋଇ ...ଛି । ଆମର ମାଟ୍ରିକୁଲେସନ ପରୀକ୍ଷାଫଳ ଦୁଇ ଗୁରୁବାରରେ ପ୍ରକାଶ ପାଇବ । ...ୀ ପରୀକ୍ଷାଫଳ ଉପରେ ହିଁ ମୋର ଭବିଷ୍ୟତ ନିର୍ଭର କରେ ।

...।୬।୬୮ : ରବିବାର ॥

ବିଶେଷ କିଛି ଘଟିନାହିଁ ଏଇ କେତେ ଦିନରେ । ଆଜି କାମବାସନା ଏମିତି ... । ଦେଶର ବର୍ତ୍ତମାନ ଅବସ୍ଥାର ଚିନ୍ତା । ବଡ଼ ହୋଇ ରାଜନୀତିରେ ଓହ୍ଲେଇବାର ... । ଅଳସୁଆମୀ ଭାବ । କାଲି ଆମମାନଙ୍କର ମାଟ୍ରିକୁଲେସନ ପରୀକ୍ଷାଫଳ ମିଳିବ ।

|| ୧୦।୬।୬୮ : ସୋମବାର ||

ଆଜି ବିଶେଷ କିଛି ଘଟିନାହିଁ । ପରୀକ୍ଷାଫଳ ବାହାରିବାର କଥା ଥିଲା, କିନ୍ତୁ ବାହାରିନାହିଁ । ଶରୀର ଠିକ୍ ଅଛି ।

ଗତକାଲି ସ୍ୱପ୍ନଦୋଷ ହୋଇଛି । ସନ୍ଧ୍ୟାରେ ବୁଲିବା ପାଇଁ ଯାଇଥିଲି । ସାଥିରେ ଯାଇଥିଲେ ରାମନାରାୟଣ, ରବିଦାସ ଓ ସୁଧୀର ରାୟ । ଧର୍ମ ପ୍ରତି ମନ ଅଳ୍ପ ଉଦାସୀନ ।

|| ୧୧।୬।୬୮ : ମଙ୍ଗଳବାର ||

ଦୁଇଟାବେଳେ ବାବୁରାମ ସାଥିରେ ଧୁବ୍ରି ଗଲି । ତୃତୀୟଶ୍ରେଣୀ ଟିକେଟରେ ଗଲି । ଉଦ୍ଦେଶ୍ୟ ଥିଲା ଜିଲ୍ଲା ଲାଇବ୍ରେରୀରେ ବହି ଜମା ଦେଇ ନୂତନ ବହି ଆଣିବା । ଦୁଇଟା ବହି ଆଣିଲି । ୧) "କୈଟିଲୀୟ ଅର୍ଥଶାସ୍ତ୍ର", ୨) "ସ୍ୱାଧୀନତା ବନାମ ସମାଜବାଦ" । ଧର୍ମର ବହି ଆଣିବାର କଥାଥିଲା, କିନ୍ତୁ ଆଣିଲି ନାହିଁ । ସେଠାରୁ ଗଲୁଁ ଯୋଗମାୟା ଆଶ୍ରମକୁ । ସେଠାରେ କହନ୍ତି ଜଣେ ଖୁବ୍ ବଡ଼ ସାଧୁ (ମାତାଜି) ଅଛନ୍ତି । ଏଇ ସାଧୁ ଜଣକ କାଳୀଭକ୍ତ । ତାଙ୍କର ବ୍ୟବହାର ମୋତେ ଭଲ ଲାଗିଲା । ଗୋଟିଏ ଟଙ୍କା ଆଶ୍ରମ ଉଦ୍ଦେଶ୍ୟରେ ଦାନ କରି ଫେରି ଆସିଲି । ସେ ଆମକୁ ଆଉଥରେ ଆସିବାକୁ କହିଲେ । ମୁଁ ନମସ୍କାର କଲିନାହିଁ । ପାଞ୍ଚଟା ବେଳେ ଫେରି ଆସିଲୁ ।

ସନ୍ଧ୍ୟାବେଳେ ଘୁରିଘୁରି ସୁଶାନ୍ତଙ୍କ ଘର ଆଡ଼କୁ ଗଲି । ସୁଶାନ୍ତର ନାନୀ ଆମକୁ ଡାକିଲା । ପରୀକ୍ଷାଫଳ ବିଷୟରେ ପଚାରିଲା । ତା' ହାବଭାବରୁ ବୁଝିଲି ସେ ମୋତେ ଭଲପାଏ; କିନ୍ତୁ ମୁଁ ତାକୁ ଭଲ ପାଏନା । ମୁଁ କେବଳ ସେଇ ଜଣକୁ ଭଲପାଏ ।

ମୁଁ ବର୍ତ୍ତମାନ ନାବିକ ନଥିବା ନୌକା ଭଳିଆ, ଯେଉଁଠାକୁ ପବନ ଟାଣି ନେଉଛି, ସେଇ ଦିଗରେ ହିଁ ଯାଉଛି । ଏଇ ସମୟରେ ମୋ ପାଇଁ ଜଣେ ପଥପ୍ରଦର୍ଶକର ଆବଶ୍ୟକତା ଅଛି ।

|| ୧୨।୬।୬୮ : ବୁଧବାର ||

କାଲି ରାତିରେ ସ୍ୱପ୍ନଦୋଷ ହୋଇଛି । ଆଜି ବିଶେଷ କିଛି ଘଟିନାହିଁ । ଗୋବିନ୍ଦ ସାଥିରେ ଏମିତି ସନ୍ଧ୍ୟାବେଳେ ବୁଲିବାପାଇଁ ଗଲି । ଭ୍ରମଣ ପାଇଁ ପ୍ରୋଗ୍ରାମ କଲି । ପରୀକ୍ଷାଫଳ ଆସନ୍ତା କାଲି ଦେବେ ।

ରାତିଆଡ଼କୁ ମନ ଅଳ୍ପ ନାସ୍ତିକ ହୋଇଅଛି । ଧୁବ୍ରିର ସାଧୁ କଥା ମନେ ପଡ଼ିଲା । ଆଜି ଆମେ ଅଛୁ, କାଲି ନାହୁଁ । ଆଜି ଏଇ ଦୁନିଆ ଅଛି, କାଲି ନାହିଁ । ନାସ୍ତିକ ପତ୍ରିକା "ସରିତା" ନ ପଢିବାପାଇଁ ମନେ ମନେ ସିଦ୍ଧାନ୍ତ କଲି ।

॥ ୧୪।୬।୬୮ : ଶୁକ୍ରବାର ॥

ମାଟ୍ରିକୁଲେସନ ପରୀକ୍ଷାଫଳ ବାହାରିଛି । ମୁଁ ସେକେଣ୍ଡ ଡିଭିଜନରେ ପାଶ୍ କରିଛି । ପରୀକ୍ଷାଫଳ ପାଇବା ସଙ୍ଗେ ସଙ୍ଗେ ସରସ୍ୱତୀଙ୍କୁ ପ୍ରଣାମ କଲି ।

॥ ୧୫।୬।୬୮ : ଶନିବାର ॥

ମୋର ମନ ଆଜି ଖୁବ୍ ଖୁସି । ମୁଁ ସେକେଣ୍ଡ ଡିଭିଜନରେ ପାଶ କରିଛି । ଆମ ସ୍କୁଲରୁ ଯୋଳଶ ଜଣ ପିଲା ପରୀକ୍ଷା ଦେଇଥିଲେ । ସେମାନଙ୍କ ଭିତରୁ ପାସ କରିଛନ୍ତି ବାରଜଣ ।

ସ୍କୁଲ'ର ଫାଇନାଲରେ ବାରଜଣଙ୍କଭିତରୁ ୬ଜଣ ପାଶ କରିଛନ୍ତି । ସେମାନଙ୍କ ଭିତରୁ ୩ଜଣ ସେକେଣ୍ଡ ଡିଭିଜନରେ ମୁଁ, ରାମନାରାୟଣ, ଉପେନ ଏବଂ ଥାର୍ଡ ଡିଭିଜନରେ ପାସ୍ କରିଛନ୍ତି ପ୍ରଣବ, ଗୋବିନ୍ଦ, ଫୋଜାୟର ଏବଂ ପ୍ରାଇଭେଟ ପ୍ରାୟ କେତେଜଣ ପାସ୍ କରିଛନ୍ତି । ମିଣ୍ଟୁ, ଅଶ୍ୱିନୀ ଇତ୍ୟାଦିଙ୍କ ସହ ଦ୍ୱିପ୍ରହରରେ କମଳାକାନ୍ତଙ୍କ ପାଖକୁ କ୍ୟାରମ ବୋର୍ଡ ଖେଳିବାକୁ ଗଲୁ । ମୁଁ ଓ ମିଣ୍ଟୁ ଗୋଟିଏ ପଟେ ଏବଂ ଉପେନ ଓ ସୁଦର୍ଶନଲାଲ୍ ଅନ୍ୟ ପକ୍ଷରେ ।

ଟୁପୁରୁ ଟାପୁରୁ ବର୍ଷା ପଡୁଛି । ରାସ୍ତାରେ ଖୁବ୍ କାଦୁଅ ହୋଇଛି । ତା ଭିତରେ ବୁଲିବାପାଇଁ ଗଲୁ । ଆଜି ମୋର ମନଟି ମହାସୁଖରେ ଅତିବାହିତ ହୋଇଛି । କିନ୍ତୁ ମୁଁ ସେଇ ସୁଖ ଅନୁଭବ କରିପାରିଲି ନାହିଁ ।

ମୋର ଗୌହାଟୀରେ ପଢ଼ିବାକୁ ଇଚ୍ଛା । କଟକ୍ କଲେଜରେ । କିନ୍ତୁ ବାପା ବୋଧହୁଏ ଗୌହାଟୀ ପଠାଇବେ ନାହିଁ । ମୁଁ ମାଟ୍ରିକ ପରୀକ୍ଷା ଦେଇ ଜଣେ ଜ୍ୟୋତିଷ ପାଖରେ ହାତ ଦେଖେଇଥିଲି । ସେ କହିଲେ, "ତୁମେ ସେକେଣ୍ଡ ଡିଭିଜନରେ ପାସ୍ କରିବ" ଏବଂ କଥାଟା ଠିକ୍ ହେଲା । ପଣ୍ଡିତଙ୍କ ନାମ ରାମନଗିନା, ଧୁବ୍ରିରେ ରହନ୍ତି ।

॥ ୧୬।୬।୬୮ : ରବିବାର ॥

ଆଜି ରବିବାର, କାଲି ଘଣ୍ଟାଏ ଗୀତ ଦେଲି ଓ ନଖ କାଟିଲି । ସମୟ ଏମିତି ଯାଉଛି, କିଛି କାମ ହେଉନାହିଁ । ମୁଁ କଲେଜରେ ଫିଲୋସୋଫି ନେବି । ଏଡ଼ିସନାଲ୍ ଗ୍ରୁପରେ ସଂସ୍କୃତ ନେବି । ମୋତେ ବଡ଼ହୋଇ ରାଜନୈତିକ ନେତା ହେବାକୁ ହେବ ।

ସନ୍ନ୍ୟାସୀ ହେବାକୁ ହେବ । ଧର୍ମ ପ୍ରଚାର କରିବାକୁ ହେବ । କାମଦାହନା ପ୍ରବଳ ରୂପେ ଅଛି । କ'ଣ କରିବି ମା, ତୁମେ ମୋତେ ବାଟ ଦେଖେଇ ଦିଅ । ମୁଁ ଅବୋଧ,

ଯେଉଁ ଦଗରେ ଜୀବନ ଯାଉଛି, ମୁଁ ସେଇ ଦଗରେ ହିଁ ଯାଉଛି । ସେଥିପାଇଁ ମୋତେ ରକ୍ଷା କର ମା ! ତୁମେ ମୋର ମା ! ମୁଁ କ'ଣ କରିବି । କିଏ ମୋତେ ବାଟ ଦେଖାଇବ ? ମୁଁ ଅବୋଧ, ମୁଁ ଶିଶୁ । ମୁଁ ଗୋଟିଏ ବୁଡ଼ି ଯାଉଥିବା ନୌକା । ମୁଁ କ'ଣ କରିବି । ହେ ଭଗବାନ ! ତୁମେ ମୋତେ ବଞ୍ଚାଅ । ମୁଁ ତୁମର ସନ୍ତାନ ଅଟେ । ମୁଁ କ'ଣ କରିବି । ତୁମେ ହିଁ ମୋତେ ରାସ୍ତା ଦେଖାଅ ।

|| ୧୨।୭।୬୮ : ସୋମବାର ||

ଦିନ ଯାଏ, ରାତି ଆସେ । ରାତି ଯାଏ, ଦିନ ଆସେ । ତଥାପି ମୁଁ ପ୍ରଥମେ ଯେଉଁ ଭଳିଆ ଥିଲି, ଏବେ ବି ସେଇ ଭଳିଆ ଅଛି । ମୋର ଅବସ୍ଥାର କୌଣସି ପରିବର୍ତ୍ତନ ହୋଇନାହିଁ । ମନ ଯାଏ ଆଧୁନିକତାର ଇଶାରା ଆଡ଼କୁ । କ୍ଷୁଧାତୁର ଦେହ ଲୋଡ଼େ ପ୍ରେମର ସ୍ପର୍ଶ । ଆତ୍ମା ଲୋଡ଼େ ଜ୍ଞାନ । କିନ୍ତୁ ଆତ୍ମାର ଲୋଡ଼ା ଅଧଃଗାମୀ ହୋଇଯାଇଛି । ଏକଦମ ତଳେ ବି ନାହିଁ । କିନ୍ତୁ ମଝିରେ ମଝିରେ ଏହି ଜ୍ଞାନପିପାସା ଉପରକୁ ଉଠି ଆସିଛି ।

ମା' ମୋତେ ସତ୍‌ରାସ୍ତାରେ ନେଇଯାଅ । ମୁଁ ମୂର୍ଖ । ମୁଁ ଇନ୍ଦ୍ରିୟର ବଶୀଭୂତ ବର୍ତ୍ତମାନ । ଭଗବାନ, ତୁମେ ମୋତେ ଜ୍ଞାନ ଦିଅ । ତୁମେ ମୋତେ ସଦ୍‌ବୁଦ୍ଧି ଦିଅ । ମା' କ'ଣ କରିବ ! ମୁଁ ମୂର୍ଖ, ମୁଁ ଭ୍ରାନ୍ତ । ମୁଁ ଧୂବୁରିରେ ପଢିବି ନା ଗୌହାଟୀରେ । ଧୁବ୍ରିରେ ପଢିଲେ ମୁଁ ଅବାଧରେ ମା'ଙ୍କ ଦର୍ଶନ କରିପାରିବି । ଗୌହାଟୀରେ ପଢିଲେ ମା'ଙ୍କୁ କେଉଁଠୁ ପାଇବି ? ମୁଁ କ'ଣ କରିବି ? ମୁଁ ଭ୍ରାନ୍ତ, ମୁଁ ସଦ୍‌ଜ୍ଞାନ-ହୀନ । ମୋର ନାମ ରାଜେନ୍ଦ୍ର ପ୍ରସାଦ । ମୁଁ ଇନ୍ଦ୍ରିୟ ଦ୍ୱାରା ବର୍ତ୍ତମାନ ପରିଚାଳିତ । କିଏ ମୋତେ ଜ୍ଞାନ ଦେବେ ? କିଏ ମୋତେ ପଥ ଦେଖେଇ ଦେବେ ?

ମୋତେ ବହୁତ ପିଲା ମିଣ୍ଟୁ, ଆଶୁତୋଷ ଓ ଆଉ କେତେଜଣ ପିଲା— କାହିଁକି ବୁଦ୍ଧୁ ବୋଲି ଭାବନ୍ତି । ଏହା'ର କାରଣ କଣ ? ମୁଁ ପ୍ରକୃତରେ ବୁଦ୍ଧୁ ନୁହେଁ । ଏହା'ର କାରଣ କଣ ? ଏହା'ର କାରଣ ହେଲା, ମୋର ମସ୍ତିଷ୍କଟା କାହା ସହିତ କଥାବାର୍ତ୍ତା କଲାବେଳେ (କିନ୍ତୁ ସବୁ ମଣିଷଙ୍କ ସାଥିରେ ନୁହେଁ) ବ୍ୟତିବ୍ୟସ୍ତ ହୋଇଯାଏ । କିନ୍ତୁ ସବୁ କ୍ଷେତ୍ରରେ ନୁହେଁ କାହିଁକି ? ଏଟା ଦୂର କରିବାର ପନ୍ଥା କ'ଣ ? କେଉଁଭଳି ଲୋକମାନଙ୍କ ପାଖରେ ମୋତେ ବୁଦ୍ଧିମାନ ସାବ୍ୟସ୍ତ କରିବାକୁ ହେବ ? ଏହା'ର ପ୍ରତିକାରର ଉପାୟ ମୋତେ ନିଜକୁହିଁ ଖୋଜିବାକୁ ହେବ ।

୧) ଏହା'ର କାରଣ ହୋଇପାରେ, ମୁଁ ନିଜକୁ ହୀନ ବୋଲି ମନେକରେ । ସେଥିପାଇଁ ମୋତେ ଏଇ ଜିନିଷ ଭାବିବାକୁ ହେବ ଯେ, ମୁଁ ପୃଥିବୀରେ ସମସ୍ତଙ୍କଠୁଁ ବୁଦ୍ଧିମାନ ଏବଂ ଯୋଗ୍ୟ । ୨) ଭବିଷ୍ୟତରେ କୌଣସି ଭୟ ନକରି କଥା କହିବାକୁ ହେବ ।

୩) ଏଇ ଭଲଆ ଚନ୍ତା କରିବାକୁ ହେବ, ମୁଁ କହୁନାହିଁ, ଭଗବାନ କହୁଛନ୍ତି । ୪) ଲଜ୍ଜାବୋଧ କରିବା ଉଚିତ୍ ନୁହେଁ (ଦରକାର ନୁହେଁ) । ୫) ଶ୍ରେଷ୍ଠ ପିଲାମାନଙ୍କ ସାଥିରେ ବେଶୀ ମିଳାମିଶା କରିବା ଦରକାର ନୁହେଁ । ମିଳାମିଶା କଲେ ଗୋଟାଏ ଗାମ୍ଭୀର୍ଯ୍ୟ ନେଇ ରହିବା ଉଚିତ୍ ।

ଏଇ ନିୟମ ଗୁଡ଼ିକ ପାଳନ କଲେ ହିଁ ସବୁ ଅପକ୍ରୋଷ ବୋଧେ ଦୂର ହେବ । ଏମିତି ଗୋଟାଏ ଗୋଟାଏ କଥା କହିବାକୁ ହେବ, ଯେମିତି ଲୋକେ ମୋତେ ବୁଦ୍ଧିମାନ ଭାବିବେ । ମା, ତୁମେ ହିଁ ସବୁ । ମୁଁ କ'ଣ କରିବି ମା ? ମୁଁ କଣ କରିବି ? ମୁଁ କିଛି ହିଁ ଜାଣିନି । ମୋତେ ଜ୍ଞାନ ଦିଅ । କାଲି ହିଁ ମୁଁ ତୁମ ପାଖରୁ ଜ୍ଞାନ ଦରକାର କରିବି । କାଲି ମୁଁ ଯେମିତି ଜ୍ଞାନୀ ହୋଇଯିବି । ପ୍ରଭୁ ! ଜ୍ଞାନ ଦିଅ । ମୁଁ କ'ଣ କରିବି ମା ! ତୁମେ ହିଁ ସବୁ !!!! ମା ; ଓ ମା ! ଶୁଣ, ତୁମର ସନ୍ତାନର କରୁଣ ପ୍ରାର୍ଥନା ଶୁଣ । ମା' ତୁମେ ଅଛ । ତଥାପି କାହିଁକି ତୁମେ ଆସନା, ମା ! କେହି ତୁମକୁ ସୁଖରେ ଡାକନ୍ତି ନାହିଁ । ହେ ମା ! ହେ ମା', ମୋର ଗୋଟିଏ କଥା ଶୁଣ । ହେ ମା ! ଆସନା କାହିଁକି ମୋ ହୃଦୟରେ । ମୋର ହୃଦୟ ତୁମପାଇଁ ଅପେକ୍ଷା କରୁଛି । କ'ଣ ଏଇ ପୃଥିବୀ । କ'ଣ ଏଇ ସଂସାର । ଭଗବାନ ! ମୋତେ ହାତ ତୋଳି ଉଠାଅ । ମୁଁ କିଛି ଜାଣିନି । ମୁଁ ଅଜ୍ଞାନୀ । ମା ଗୋ ! ମୁଁ କିଏ, ତୁମେ ବା କିଏ । ତୁମର ମୋର କି ସମ୍ପର୍କ । ତୁମେ ମୋ ଠାରୁ କେତେ ଦୂରରେ ? କେତେଦୂରରେ କେଉଁଠି ତୁମେ ଓ କେଉଁଠି ମୁଁ । ତୁମେ କେତେଦୂରରେ, କେତେବେଳେ ତୁମ ସଙ୍ଗେ ମୋର ଦେଖା ହେବ ? ମୁଁ ଆଉ କେତେବେଳ ଅପେକ୍ଷା କରିବି ? ଆଉ ଅପେକ୍ଷା କରିପାରୁନି । ମୋତେ ଉଠାଅ, ମୋର ହାତଧରି ଉଠାଅ । ମୁଁ ଭ୍ରାନ୍ତ । ମୁଁ କିଏ ? ମୁଁ କ'ଣ ? ମୁଁ କିଏ ? ତୁମେ କିଏ ? କିଏ ମେଣ୍ଟେଇ ପାରିବ ତୁମ ମୋ ଭିତରର ଦୂରତ୍ୱ । କିଏ ଦେଖେଇଦେବ ସତ୍ୟରେ, ହାୟ ! ହାୟରେ ଅବିବେକ ! ମୋତେ କାହିଁକି ଭୁଲାଇ ରଖିଛ ? ମୋ ଭଳିଆ ହଜାର ହଜାର ଲୋକଙ୍କୁ ତୁମେ ଭଣ୍ଡେଇଛ । ଏଇଟା ତୁମର ଅବିଚାର ! ମା !!!! ପ୍ରଭୁ ! ମୋ ଆଡ଼କୁ ଥରେ ଚାହଁ । ମା ! ମା ! ମା ! ତୁମେ ଯେ ମୋର ସବୁ !

॥ ୧୮।୭।୭୮ : ମଙ୍ଗଳବାର ॥

ଗୋଟିଏ କଷ୍ଟିରେ ଆସି ପହଞ୍ଚିଛି । ମୋର ମନଟା ଆଜି ଟିକିଏ ଭଲ ।

ଜୀବନ ମରଣ ଦୁଇଜଣ ବନ୍ଧୁ । ଏଇ ପୃଥିବୀରେ ରହି କ'ଣ ହେବ ? କାହିଁକି ବା ଆସିଛି ଏଇ ପୃଥିବୀକୁ ? କେତେବେଳେ ବା ଯିବି ମୁଁ ଏଇ ପୃଥିବୀରୁ ? ମୋତେ, କିଏ ତିଆରି କରିଛି । ଏଇ ସାଧାରଣ କଥା ବି ଯଦି ଜାଣେନା, ତା'ହେଲେ କ'ଣ ହେବ ଏଇ ଦୁନିଆଁରେ ରହି ? କେଉଁଭଳି ତୁମେ ଗଢ଼ିଛ ଏଇ ପୃଥିବୀ ?

କେଉଁଭଳି ତୁମେ ଏକଲ ଜୀବକୁ ମୋହ ମାୟାର ଜାଲରେ ବାନ୍ଧି ରଖିଛ ? ଏଇ ରକମ ରଖିବାରେ ତୁମର କ'ଣ ଲାଭ ହୋଇଛି ? ଯଦି କୌଣସି ଲାଭ ହୋଇଛି, ତା'ହେଲେ କି ଲାଭ ହୋଇଛି ? ମୁଁ କିଛି ହିଁ ଜାଣିନି । ମୋତେ ଜ୍ଞାନ ଦିଅ ପ୍ରଭୋ ! ମୁଁ ମୂର୍ଖ । ମୁଁ ଭ୍ରାନ୍ତ । ମୁଁ କ'ଣ କରିବ ? କୁଆଡ଼େ ଯିବ ? କ'ଣ କରିବ ? ସମସ୍ତିତ ଏମିତି ଗଡ଼ି ଯାଉଛି । ମୂଲ୍ୟବାନ ସମୟ ଗଡ଼ି ଯାଉଛି, ମୁଁ କିଛି ବି କରୁନି । କ'ଣ କରିବ, ଯେତା ବର୍ତ୍ତମାନରୁ ହିଁ ମୋତେ ଠିକ୍ କରି ନେବାକୁ ହେବ ।

୫ରୁ ୬ଟା ଉଠିବା, ବୁଲିବା, ବ୍ୟାୟାମ କରିବା, ୬ରୁ ୭ଟା ଭଗବାନର ଚିନ୍ତନ ଧର୍ମଗ୍ରନ୍ଥ, ୭ରୁ ୮ଟା ସଂସ୍କୃତ; ୮ରୁ ୯ଟା ଇଂରାଜୀ, ୧୨ରୁ ୨ଟା ଅନ୍ୟାନ୍ୟ ବହିପତ୍ର; ୮ରୁ ୯ଟା ଆସିମୀୟା, ହିନ୍ଦୀ, ୯ରୁ ୧୦ଟା ଡାଏରୀ ବା ଅନ୍ୟାନ୍ୟ ଲେଖା ।

। ୧୯।୬।୭୮ : ବୁଧବାର ॥

କ'ଣ ହେବ ଆଉ ସଂସାରରେ ରହି ? ସୁଖ ନାହିଁ, ସୁଖ ନାହିଁ ସଂସାରରେ । ଆଉ ରହିବାକୁ ଚାହୁଁନି । ଭଗବାନ, ଶୀଘ୍ର ମୋତେ ନେଇଯାଅ । ଆଉ ଭଲ ଲାଗେନା । ଉଃ ! ଅନ୍ଧକାର ! ନିରାଶା । କ'ଣ କରିବ ? କ'ଣ କରିବ ? ହେ ପ୍ରଭୁ ! କ'ଣ କରିବ ? ଆଶା ! ତୁମେ ଆସ । ମୋର ଆଉ କେହି ନାହିଁ । ମୁଁ ଏକୁଟିଆ । ମୁଁ କ'ଣ କରିବ ? ହାୟ ରାମ । ହାୟ ମା ! ଉଃ !! ହୁଃ ! ଆହା ! ଆନନ୍ଦ ଏଇ ଜୀବନ ଠାରୁ କେତେ ଦୂରରେ ଅଛି !

ଚତୁର୍ଦ୍ଦିଗରେ ହିଁ ନିରାଶା ! କେବଳ ନିରାଶା ! କିଏ ମୋତେ ବିପଦରେ ପକାଉଛି ବା କେମିତି ? କ'ଣ କରି ମୁଁ ତା' ସାଥିରେ ଯୁଦ୍ଧ କରିବ । ମୁଁ କ'ଣ କରିବ ? କ'ଣ କରିବ ? ଆଉ କଣ କରିବି ! ହେ ରାମ ' ଭଗବାନ । ମୁଁ କ'ଣ କରିବ ? କ'ଣ କରିବ ହେ, କ'ଣ କରିବ ? ସୁଖ ନାହିଁ, ଏଇ ସଂସାରରେ ସୁଖ ନାହିଁ । ସୁଖ ନାହିଁ, କେବଳ ନିରାଶା । ମା, ମୋର ମନ ବହୁତ ଦୂର ଖସି ଯାଉଛି । ମୁଁ ଅନେକ କିଛି ଚାହୁଁଛି । ଅନେକ କିଛି ଚାହୁଁଛି । କେବଳ ଚାହୁଁଛି । କିନ୍ତୁ କିଛି ତ ପାଉନି । ହେ ମା' ! ହେ ମା' ! କ'ଣ କରିବ ?

ମୁଁ କ'ଣ ? ମୁଁ କିଏ ? ମୁଁ କ'ଣ ମୋ ପିତାମାତାଙ୍କର ପୁତ୍ର ? ସେମାନେ ମୋତେ କେଉଁଠାରୁ ଆଣିଛନ୍ତି ? ନା, ମୋତେ ସେମାନେ ତ ତିଆରି କରିନାହାନ୍ତି । ସେମାନେ ତ କେବଳ ମୋତେ ଶରୀର ଦେଇଛନ୍ତି । ଆଉ ଅସଲ ଜିନିଷ ତ ମୁଁ ଅଟେ ଏବଂ ମୋର.................. ।

ସନ୍ଧ୍ୟା ୫ଟା ବେଳେ ବୁଲିବାକୁ ଗଲି । ଶିବୁ ଓ ନିଖିଲ ମୋ ସାଥିରେ ଗଲେ । ସେମାନେ କହିବା ଆରମ୍ଭ କଲେ "ଆମକୁ କିଛି ଖାଇବାକୁ ଦେବାକୁ ହେବ ।" ତୁମେ

ପ୍ରେଜେଣ୍ଟ ଡ଼ିଭିଜନରେ ପାସ୍ କରିଛି । ମୁଁ ସେମାନଙ୍କୁ କଗ୍ରେଚ୍ଛ ଓ ଗ୍ଡ଼ ଖୁଆଇଲି । ତା'ପରେ ନଦୀ ଆଡ଼କୁ ବୁଲିବା ପାଇଁ ଗଲୁ । ନଦୀର ସୁନ୍ଦର ଦୃଶ୍ୟ ଓ ଥଣ୍ଡା ପବନ ଉପଭୋଗ କଲୁ । ଖୁବ୍ ଭଲ ଲାଗିଲା । ତା'ପରେ ସେଠାରୁ ଗଲୁ ରତନ (ସାହୁ)ଙ୍କ ଘରକୁ ।

ବାପା ମୋତେ ପଚାରିଲେ— "ତୁ ସାରାଦିନ କେଉଁଠାରେ ଥିଲୁ ?" ମନଟା ଖୁବ୍ ଖରାପ ହୋଇଗଲା । ମୁଁ କହିଲି ଯେ "କାହିଁକି ? ବୁଲିବା ପାଇଁ ଯାଇଥିଲି " ଏଇଭଳିଆ ପଚାରିବା ଦ୍ୱାରା ମୋର ବହୁତ ରାଗ ଉଠିଲା । ଭାବିଲି, ଆଜି କାଲିଠାରୁ ସାରାଦିନ ବାହାରେ ରହିବି । ମ୍ୟାଟ୍ରିକ ପାସ ହୋଇଗଲେ ମଣିଷର ମସ୍ତିଷ୍କ ଖରାପ ହୋଇଯାଏ । ମନଟା ଖୁବ୍ ଅଶାନ୍ତ । କିଛି ବି ଭଲ ଲାଗୁନି । କ'ଣ କରିବି ? କୋଉଥିପାଇଁ ମନଟା ବ୍ୟାକୁଳ ।

ବାପାଙ୍କୁ ମୁଁ ଦିନେ କହିଥିଲି "ମୁଁ ଗୌହାଟୀରେ ପଢିବି ।" ବାପା କହିଲେ— "ନା, ଧୁବୁରୀରେ ଭଲ ହେବ ।" ମନେ ମନେ ମୋର ଭୀଷଣ ରାଗ ଉଠିଲା । ନା, ମୁଁ ଗୌହାଟୀରେ ହିଁ ପଢିବି । ଯାହା ବି ମୁଁ କୁହେ, ତାକୁ ଉଡ଼େଇ ଦିଆଯାଉଛି । ମୋର ସେଥିପାଇଁ ଭୀଷଣ ରାଗ । କିନ୍ତୁ କ'ଣ କରିବି ? ଉପାୟ ନାହିଁ । ମୋର ବେଳେ ବେଳେ ଏଇ ଭଳିଆ ମନ ହୁଏ ଘରଛାଡ଼ି ଚାଲିଯିବା ପାଇଁ । ଭଗବାନ ମୋ ସଙ୍ଗରେ ଅଛନ୍ତି; ସାହାଯ୍ୟ ଅବଶ୍ୟ କରିବେ । ରାତିରେ ସ୍ୱପ୍ନଦୋଷ ହୋଇଛି ।

କ'ଣ କରିବି ଭଗବାନ ! କ'ଣ କରିବି ମା' ! କ'ଣ କରିବି ମୁଁ । ମୁଁ ବ୍ୟାକୁଳ କେଉଁଥିପାଇଁ ଜାଣିନି । କ'ଣ ଏ ଜୀବନ ? ଆମେ ଆଜି ଅଛୁ, କାଲି ନାହୁଁ । କିଛି ହିଁ କରିପାରିଲି ନାହିଁ । ମା' ! ସାହାଯ୍ୟ କର । ମୁଁ ନାମ ଚାହେଁନା, କିଛି ହିଁ ଚାହେଁନା । କ'ଣ କରିବି, କ'ଣ କରିବି । ମନକୁ କିଭଳି ଶାନ୍ତ ରଖିବି, ମା ?

ଏକ ଏକ କରି ଦିନ ଗଡ଼ି ଯାଉଛି । କିଏ ଏଇ ପୃଥିବୀରେ ଆପଣାର ? କିଏ କାହାର ଭଲ ଚାହେଁ ? କିଏ କାହାର ଭଲ ସହିପାରେନା ।

॥ ୨୯।୭।୭୮ : ଶୁକ୍ରବାର ॥

ମୁଁ ସାତଟା ବେଳେ ଶେଯ ଛାଡ଼ିଲି । ୨୯.୭.୭୮ ହେଉଛି ପି.ୟୁ. ନାମଲେଖାର ଶେଷ ତାରିଖ । ତେଣୁ ଏଇ ନିଷ୍ପତ୍ତି ନେଲି ଯେ ମୁଁ ଲଜିକ୍, ଇକୋନମିକ୍ସ ଏବଂ ହିଷ୍ଟ୍ରି ଏବଂ ସଂସ୍କୃତ (ଅତିରିକ୍ତ) ନେଇବି । ରାତି ନ'ଟା ବେଳେ ବାପା ମୋତେ ପଚାରିଲେ, 'ତୁ କୋଉ କଲେଜରେ ପଢିବୁ ?' ମୁଁ କହିଲି, 'କଟନ୍ କଲେଜରେ ।' ବାପା କହିଲେ ଧୁବୁରୀର ଭୋଲାନାଥ କଲେଜରେ ହିଁ ଭଲ ହେବ । ମୁଁ ଅନେକ ଯୁକ୍ତି ସହିତ ଦେଖେଇବା ଚାହିଁଲି ଯେ, ଧୁବୁରୀ କଲେଜ ଖୁବ୍ ଖରାପ । କିନ୍ତୁ ବାପା ମୋର କୌଣସି

କଥା ବି ମାନିଲେ ନାହିଁ ।

ରାତରେ ଖୁବ୍ କାନ୍ଦିଲି । ତେବେ କ'ଣ ମୁଁ କଟକ କଲେଜରେ ପଢି ପାରିବି ନାହିଁ ? ମନରେ ଭୀଷଣ ଆଘାତ ଲାଗିଲା । ବହୁତ କଳ୍ପନା ଜଳ୍ପନା କଲି । ଭାବି ଭାବି ଶୋଇ ପଡ଼ିଲି ।

॥ ୨୨।୭।୭୮ : ଶନିବାର ॥

ଛଅଟା ବେଳେ ରାମନାରାୟଣ ଆସିଲା । ଧୂବ୍ରି ଯିବାପାଇଁ । ମୁଁ ବି ଯିବାକୁ ବାହାରିଲି । ଖାଇ ବସିଲି । ମା'ଙ୍କୁ କହିଲି, ବାପା କୃପଣ, ଅମୁକ, ତମୁକ, ମୋତେ ଗୌହାଟୀରେ ପଢିବାକୁ ପଠେଇଲେ ନାହିଁ ଅଳ୍ପ ଟଙ୍କାର ଲୋଭରେ । ମୁଁ ଏଇ କଥା ଗୁଡ଼ିକ କହିବାରେ ମା' ମନେ ମନେ ଖୁବ୍ ଆଘାତ ପାଇଲା । କହିଲା— ତୋ ଭଳିଆ ପୁଅ ଜନ୍ମ କରି ଆମକୁ "କଞ୍ଜୁସ୍" ଶବ୍ଦଟା ଶୁଣିବା ପାଇଁ ପଡ଼ିଲା । ତୋର ଯୁଆଡ଼େ ଇଚ୍ଛା, ସ୍ୟାଡ଼େ ଯା' । ତୋତେ କିଏ ମନା କରୁଛି । ମୁଁ କିଛି ନକହି ଚୁପ୍‌ଚାପ ଖାଇ ଉଠିଗଲି ।

ଅସଲ କାରଣଟା କିନ୍ତୁ ଟଙ୍କାର ଲୋଭ ନୁହେଁ । କାରଣଟା ହେଲା, ୧) କିଛି ଦିନ ପୂର୍ବେ ଗୌହାଟୀରେ ମାରପିଟ୍‌ରେ ଭୀଷଣ କନ୍ଦଳ ହୋଇଥିଲା ଏବଂ ପୁଣି ହେବାର ସମ୍ଭାବନା ଥିଲା । ୨) ଅନ୍ୟ ଯାଗାରେ ମୁଁ ଏକୁଟିଆ ରହିଲେ କେଜାଣି ଗୁଣ୍ଡା ହୋଇ ଯାଇପାରେ ।

ବାପା ଦ୍ୱିତୀୟ କାରଣଟା କିନ୍ତୁ ମୁହଁ ଖୋଲି କହିଲେ ନାହିଁ । ମୁଁ ହାବଭାବରୁ ବୁଝି ପାରିଥିଲି । ଦ୍ୱିତୀୟ କାରଣଟା ପାଇଁ ମୋତେ ମନେ ମନେ ଭୀଷଣରୁ ଭୀଷଣତର ଆଘାତ ଲାଗିଲା । ବିଶେଷ ରୂପେ ବାପାଙ୍କର ଏଇଭଳିଆ ସନ୍ଦେହ ପାଇଁ ।

ଏଗାରଟା ଟଙ୍କା ନେଇ ବସରେ ଯାଇ ଚଢ଼ିଲି ଫର୍ମ ଆଣିବା ପାଇଁ, ଧୂବ୍ରି କଲେଜର । ବାପାଙ୍କ ଉପରେ ମୋର ଆଜି ଭୀଷଣ ରାଗ । ପ୍ରଥମେ କଲେଜକୁ ଗଲି, ଫର୍ମ କିଣିଲି ଗୋଟିଏ । ତା'ପର ଗଲି ରାମନଗିନା ପଣ୍ଡିତଙ୍କ ପାଖକୁ, ହାତ ଦେଖେଇଲି । ପଚାରିଲି, ଏଇବର୍ଷର ପଢ଼ାଶୁଣା କିପରି ହେବ । ସେ କହିଲେ— ଖୁବ୍ ଭଲ ନୁହେଁ, ମଧ୍ୟମ ଧରଣର । କିନ୍ତୁ ପାଶ୍ କରିଯିବ । ମୁଁ ପଚାରିଲି— ମୁଁ କାହାର ଭକ୍ତ ବର୍ତ୍ତମାନ ? —ସେ କହିଲେ, କାଳୀର । କଥାଟା ଲାଗିଗଲା । ତା'ପରେ ବୁଲିବୁଲି କାଳୀ ମା'ଙ୍କ ଆଶ୍ରମ ଆଡ଼କୁ ଗଲି । ପରିକ୍ରମା କରିବାକୁ ବସିଲି ଗୋଟିଏ ଯାଗାରେ । ଜଣେ ମୋତେ କହିଲା— (ବୋଧହୁଏ ଥଟ୍ଟାମଜାରେ) ଏଠାରେ ପରିକ୍ରମା କରିବ ନାହିଁ । ମୁଁ ପରିକ୍ରମା ନକରି ପୁଣି ଉଠିଲେ । ସେମାନେ ହସିବାକୁ ଲାଗିଲେ । ଖୁବ୍ ଖରାପ ଲାଗିଲା । ମୁଁ ପ୍ରତି ପଦେ ପଦେ ବାଧା ପାଉଛି । ତା'ପରେ କାଳୀ

ଆଶ୍ରମକୁ ଗଲୁ । ସେଠାରୁ ବି ନିରାଶ ହୋଇ ଫେରି ଆସିଲି । କାଳୀଙ୍କ ଆଶ୍ରମଟା କ'ଣ ପୂଜା ଯୋଗୁଁ କେଜାଣି ବନ୍ଦ ଥିଲା ।

ସିନେମା ଦେଖିବାର କଥା ଥିଲା, ସେଟା ବି ହୋଇପାରିଲା ନାହିଁ । ସନ୍ଧ୍ୟା ରାତ୍ରିରେ ଫେରିଆସିଲି । ରାତିରେ ପ୍ରାୟ ସ୍ୱପ୍ନଦୋଷ ହେଉ ହେଉ ବଞ୍ଚିଗଲି । ସ୍ୱପ୍ନରେ କାହାକୁ ପୂରିବା ପାଇଁ ଯାଇଥିଲି । କାମ ବାସନାର ପ୍ରାବଲ୍ୟ ଥିଲା ଏବଂ ମନଟା ନିରାଶାରେ ଆଚ୍ଛନ୍ନ ଥିଲା ।

|| ୨୩।୭।୬୮ : ରବିବାର ||

କେଉଁଥିପାଇଁ ଜୀବନ ଧାରଣ ? କେଉଁଥି ପାଇଁ ?

|| ୧୪।୭।୬୮ : ରବିବାର ||

ମୁଁ ଆସନ୍ତା କାଲି ଧୁବୁଡ଼ି ଯିବି । କାଲିଠାରୁ ଆମର କ୍ଲାସ ଆରମ୍ଭ । କାଲି ପାହାନ୍ତି ଆଠଟା ବେଳେ ଏଠାରୁ ଯିବାକୁ ହେବ । ୧।୧୫ରେ ସେଠାରେ ପହଞ୍ଚିବି ।

|| ୧୦।୧୧।୬୮ : ରବିବାର ||

ଆଜି ମୁଁ ଅନେକ ଦିନପରେ ପୁଣି ଡାଏରୀ ଲେଖିବା ଆରମ୍ଭ କଲି । ସ୍ୱା' ଭିତରେ ଅନେକ ଘଟଣା ଘଟିଗଲେ । ମୋ ଜେଜମା'ଙ୍କ ଦେହାନ୍ତ ହୋଇଗଲେ (୧୫।୧୦।୬୮) । ବନ୍ୟାଜଳ ବି ହୋଇଗଲା ।

ମୁଁ ବର୍ତ୍ତମାନ ଧୁବୁଡ଼ିର ବି.ଏନ୍. କଲେଜରେ ପଢୁଛି । ପି.ୟୁ କ୍ଲାସରେ ! ପଢ଼ାଶୁଣା ବିଶେଷ କିଛି ହେଉନାହିଁ । ମୁଁ ଆଜି ଖୁବ୍ ସୁଖୀ ।

|| ୧୧।୧୧।୬୮ : ସୋମବାର ||

ପଢ଼ାଶୁଣା ତ ବିଲକୁଲ୍ ହେଉନାହିଁ । ଭୟ ହେଉଛି, କେଜାଣି ଫେଲ ହେବି । ଏପର୍ଯ୍ୟନ୍ତ ମୁଁ ଫେଲ ହୋଇନାହିଁ ।

ପଢ଼ାଶୁଣାରେ ବିଲ୍‌କୁଲ୍ ମନ ଲାଗୁ ନାହିଁ । ବର୍ତ୍ତମାନ କ'ଣ କରିବି ନ କରିବି ଭାବି ବି ପାରୁନାହିଁ । ଟେଷ୍ଟ ପରୀକ୍ଷା ଆସି ଯାଇଛି !

(କାହିଁଥିପାଇଁ ଜୀବନ ଧାରଣ ?) ଅନ୍ଧକାର ! ଚତୁର୍ଦ୍ଦିଗେ ଅନ୍ଧକାର । ଆଲୋକ ନାହିଁ । କୋଉଠି ବି ଆଲୁଅ ଦେଖାଯାଉନାହିଁ । କ'ଣ କରିବି ? କୁଆଡ଼େ ଯିବି ? କିଏ ମୋତେ ପଥ ଦେଖାଇଦେବ ? କାହିଁକି ବା ମୁଁ ଘର ଛାଡ଼ି ଚାଲିଲି ଆସିଲି ? ମୁଁ ଆଲୋକର ସନ୍ଧାନରେ ବାହାରିଛି । କିନ୍ତୁ ଆଲୋକ କୁଆଡ଼େ ?

ଏବେ କାହାର ସାହାଯ୍ୟ ନେବି ? ଆଃ ! ତୁମେତ ମୋତେ ଏତେଦୂର ପର୍ଯ୍ୟନ୍ତ ଆଣିଛ ? ବର୍ତ୍ତମାନ ତୁମେ ହିଁ ମୋତେ ସାହାଯ୍ୟ କର । ତୁମ ବିନା ମୋର ବର୍ତ୍ତମାନ

କେହି ବି ନାହିଁ । ତୁମେ ମୋର ଏକମାତ୍ର ସତ୍ଯ । କେଉଁଠି, ଆଶା ! ତୁମେ କେଉଁଠି ? ତୁମେ କେତେଦୂରେ ! ଚାଲୁଛି, ଚାଲୁଛି, କେବଳ ହିଁ ଚାଲୁଛି । କିନ୍ତୁ କିଛି ବି ତ ଦେଖିବାକୁ ମିଳୁନାହିଁ । କ'ଣ କରିବି ? କ'ଣ କରିବି ? !

ମୁଁ ଏକୁଟିଆ । କେହି ବି ମୋ ସାଙ୍ଗରେ ନାହିଁ । ମୋ ସାଙ୍ଗରେ କେବଳ ଜଣେ ଅଛି, ଯାହାକୁ ଲୋକେ ଭଗବାନ ବୋଲି ଡାକନ୍ତି ? ମୁଁ କାହାର ସନ୍ଧାନରେ ଯେ ଘରୁ ବାହାରିଛି, ସେଟା ବି ଜାଣିନି । ତଥାପି ଯାଉଛି, ଯାଉଛି, କେବଳ ହିଁ ଯାଉଛି । ମୋତେ କିଏ ସିଆଡ଼େ ନେଇ ଯାଉଛି . ସେଟା ବି ଜାଣିନି । ମୁଁ କ'ଣ ? ମୁଁ କିଏ— ମୁଁ କୁଆଡ଼େ ଯାଉଛି ? ମୁଁ ଭ୍ରାନ୍ତ ।

ମୁଁ ବୋଧହୁଏ ଆଲୋକର ସନ୍ଧାନରେ ବାହାରିଛି । କିନ୍ତୁ କୋଉଠି ସେଇ ଆଲୋକ ? କ'ଣ ଏଇ ପୃଥିବୀ, କ'ଣ ଏଇ ଦୁନିଆଁ ? କିଏ ତିଆରି କରିଛି ? କେଉଁ କାରିଗର ତିଆରି କରିଛି ? କିଏ ରଙ୍ଗ ଦେଇଛି, ମୁଁ କିଛି ବି ଜାଣିନି । ହେ ପ୍ରଭୁ ! ସତ୍ୟ କ'ଣ ?

ଭୟ ଲାଗୁଛି । ଭୟ କି ଜିନିଷ ତାହା ଜାଣିନି । ତେବେ କାହାର ଭୟ ? ମରିବାର ଭୟ ! ନା, ମୁଁ ତ ମୃତ୍ୟୁକୁ ଭୟ କରୁନି । ଦିନେ ତ ମରିବାକୁ ହେବ । ତେବେ କି ପ୍ରକାର ଭୟ ? କାହାର ଭୟ ତେବେ ? ବୋଧହୁଏ, ମୃତ୍ୟୁର ଭୟ ହେବ । ପୃଥିବୀରେ ମଣିଷ କେଉଁଥିପାଇଁ ବଞ୍ଚିଛି ? କ'ଣ ପାଇବା ପାଇଁ ସେ ଏତେ ଦୁଃଖକଷ୍ଟ ଭୋଗ କରୁଛି ?

ସକାଳ ହେବାକୁ ଆଉ ବେଶୀ ଡେରି ନାହିଁ । କିଛି କିଛି ଦେଖାଯାଉଛି । ମୁଁ ଘରୁ ଅନେକ ଦୂର ଆସିଯାଇଛି । ୩୪ ଦିନ ହେଲା କେବଳ ହିଁ ଚାଲୁଛି । କେବଳ ହିଁ ଚାଲୁଛି । ସାମ୍ନାରେ ପାହାଡ଼ ଦେଖାଯାଉଛି । ଗୋଟିଏ ସ୍ରୋତ ଝରଣା ମୋର ପାଖ ଦେଇ ଯାଇଛି । ଗୋଟିଏ ହରିଣ ଓ ଗୋଟିଏ ହରିଣୀ ଡେଇଁଡେଇଁ ଝରଣା ପାଖକୁ ଆସିଲେ । ମୁଁ କିଛି ଦୂରରେ ଥିଲି । ଇଏ ତାକୁ ଚାଟୁଛି, ସିଏ ତାକୁ ଚାଟୁଛି । ସେମାନେ ଦୁଇଜଣ ଯାକ ଖୁବ୍ ଖୁସି । ମୋର ଗୋଟିଏ ଜ୍ଞାନ ହେଲା । ଜୀବମାନେ କେଉଁଥିପାଇଁ ଏଇ ପୃଥିବୀରେ ବଞ୍ଚିଛନ୍ତି ॥

ମୁଁ ଯାହା ଏତେଦିନ ହେଲା ଖୋଜୁଛି, ସେଇ ସତ୍ୟକୁ ଏତେ ନିକଟରେ ପାଇ ଖୁବ୍ ଖୁସି ହେଲି । ମା ! ତୋର ପବିତ୍ର ନାମ ସ୍ମରଣ କରି ମୋର ଜୀବନ ଚରିତ ଲେଖିବା ଆରମ୍ଭ କଲି ।

ଇଂରାଜୀ ୧୯୫୧ ନଭେମ୍ବର ୨, ଶୁକ୍ରବାର, ୨୦୦୮ ଶକାବ୍ଦ କାର୍ତ୍ତିକ (ବଦି) ତୃତୀୟା, ଶୁକ୍ରବାର ସନ୍ଧ୍ୟା ୪।୫ଟା ସମୟରେ (ସନ୍ଧ୍ୟା ଆରତି ବେଳକୁ) ଏଇ

ପୃଥିବୀରେ ମାନବ ଶରୀରରେ ଆସିଲି । ମୋର ବାପାଙ୍କର ନାମ ଶ୍ରୀ ମାଣିକଚନ୍ଦ ଝେଭାଓ୍ୱତ୍ ଏବଂ ମା'ଙ୍କ ନାମ ଧାପୁ ଦେବୀ । ଆମେ ଚାରି ପୁରୁଷ ହେଲା ଏଇଠାରେ ହିଁ ଅଛୁ । ମୋର ଜନ୍ମ ଏଇଠାରେ । ଗାଁ— ଗୋଲକଗଞ୍ଜ, ଆସାମ ।

ମୋର ବାପା ପ୍ରଥମେ ଷ୍ଟୋର ବ୍ୟବସାୟ କରୁଥିଲେ । ବର୍ତ୍ତମାନ (୧୯୬୮) ଆଲୁମିନିୟମ କାରଖାନା ଅଛି । ମୋର ବଡ଼ ଦୁଇଜଣ ଭାଇ ଓ ଜଣେ ଭଉଣୀ । ମୋର ଜ୍ୟେଷ୍ଠ ଚାରିଜଣ ଭାଇ । ମୋର ବଡ଼ଭାଇ ବି.କମ୍. କରିଛନ୍ତି (୧୯୬୬) । ତାଙ୍କ ନାମ ଯୁଗଲ । ସେ ନାସ୍ତିକ । ତାଙ୍କଠାରୁ ଜ୍ୟେଷ୍ଠର ନାମ ସାଓ୍ୱରମଲ୍ଲ । ସେ ମାଟ୍ରିକ ପାଶ୍ କରିଛନ୍ତି (୧୯୬୭) । ବର୍ତ୍ତମାନ ଗୋଟିଏ କଠିନ (ଦୁଃସାଧ୍ୟ) ବ୍ୟାଧି ଯୋଗୁ ତାଙ୍କର ପଢାଶୁଣା ବର୍ତ୍ତମାନ ବନ୍ଦ । ମୁଁ ମାଟ୍ରିକ ପରୀକ୍ଷା ଦେଇଛି, ବର୍ତ୍ତମାନ ପର୍ଯ୍ୟନ୍ତ ପରୀକ୍ଷା ଫଳ ପାଇନାହିଁ । ତେଣୁ ଅବକାଶ ବେଳେ ଆତ୍ମଜୀବନୀ ଲେଖିବା ପାଇଁ ବସିଛି ।

ଏକରୁ ଚାରି ବର୍ଷ ବୟସ ପର୍ଯ୍ୟନ୍ତ କ'ଣ କରିଛି, କ'ଣ ଦେଖିଛି, ମୋର କିଛି ମନେ ନାହିଁ । ମୁଁ ଚାରିବର୍ଷ ବୟସ ପରେ କଥା କହି ଶିଖିଲି । ଆମର ଜେଜେବାପାଙ୍କ କଥା ଅଳ୍ପ ଅଳ୍ପ ମନେପଡ଼େ । ସେ ଯେତେବେଳେ ମରିଗଲେ, ସେତେବେଳେ ମୋର ବୟସ ଚାରିବର୍ଷ । ମୋର ମନେପଡ଼େ ଜେଜୀମା'ଙ୍କ ସହିତ ବଗିଚାକୁ ଯାଏ । ଜେଜେ-ବାପା ରାତିରେ ମରି ଯାଇଥିଲେ । ସକାଳେ ମୁଁ ଦେଖେ ଯେ, ଜେଜେବାପା ନାହାନ୍ତି । ମୁଁ ମା'କୁ ପଚାରିଲି, "ମା ! ଜେଜେବାପା କୁଆଡ଼େ ?" ମା କହିଲା ଯେ, ଜେଜେ-ବାପା ଈଶ୍ୱରଙ୍କ ଘରେ ଅଛନ୍ତି ।

ଆଉ ମନେ ପଡ଼େ ଜେଜୀମା'ଙ୍କ ସହିତ ଜ୍ୟେଷ୍ଠ ଗିଲାସରେ ଚା' ଖାଏ । ମନେପଡ଼େ, ମୁଁ, ନାନୀ ଓ ବଡ଼ଭାଇ ଫୁଲ ବଗିଚା ତିଆରି କରୁ । ଫୁଲ ଗଛରେ ପାଣି ଦେଉ । ବାପାଙ୍କ ପାଖରେ ବସି ତାସ ଖେଳା ଦେଖେ । ସେତେବେଳେ ଭାବେ, ବଡ଼ (ବୟସରେ) ମଣିଷମାନଙ୍କର କି ସୁଖ ? ଯାହା ଇଚ୍ଛା, ତାହା କରିପାରନ୍ତି ।

ମୁଁ ଯେତେବେଳେ ଛ ମାସର ଥିଲି, ସେତେବେଳଠାରୁ ଆଜି ପର୍ଯ୍ୟନ୍ତ ଦିଆସିଲି ଓ ବାଡ଼ରେ ହାତ ଲଗେଇ ନାହିଁ, ବହୁତ ଘୃଣା କରେ । ନାନୀ ଓ ବଡ଼ଭାଇଙ୍କ ସହିତ ଲୁଚକାଳି ଖେଳେ, ରାତ୍ରିରେ ଶିଆଳର ଡାକ ଶୁଣେ ।

ମା, ରାନ୍ଧୁଣୀ ଏବଂ ଆଉ ଅନେକଙ୍କ ଠାରୁ ମେଳା ଗଳ୍ପ ଶୁଣୁ ବାହାରେ ଝଟିଆରେ ବସି ମୁଁ ଏବଂ ମୋର ବଡ଼ଭାଇମାନେ । ମନେପଡ଼େ ଅନେକ ଲୋକମାନଙ୍କୁ ଷ୍ଟୋରରେ ମୂଲ୍ୟ ନେବାକୁ ଆସନ୍ତି । ମୁଁ ଭାବେ, କେଉଁଠାରେ ସେମାନଙ୍କର ଘର ? ମେଳା ଦିନରେ ଅନେକ ଜିନିଷ, ଖେଳଣା ଆଦି ଆଣେ । ଭାବେ, ଖେଳନା ଗୁଡ଼ିକ ବନା ପଇସାରେ ମିଳେ । ଖେଳନା ଓ ନୂଆ ପୋଷାକ ଖୁବ୍ ଭଲପାଏ ।

ମନେପଡ଼େ ଦଶହରା, ରାମନବମୀର କଥା । ମନେପଡ଼େ ବାଣ ଫୁଟେଇବାର କଥା । ଉପରେ ମୁଁ ଯାହାସବୁ କହୁଛି, ସେଗୁଡ଼ିକ ମୋର ଚାରିବର୍ଷ ବୟସ ପୂର୍ବର କଥା । ପାଞ୍ଚବର୍ଷ ବୟସରେ ମୁଁ ସ୍ଲେଟ, ଖଡ଼ି ଧରିଲି । ଆମ ଘରକୁ ଜଣେ ଘରୋଇ ଶିକ୍ଷକ ଆସୁଥିଲେ । ତାଙ୍କ ପାଖରେ ମୋର ବଡ଼ଭାଇମାନେ ପଢ଼ୁଥିଲେ । ମୁଁ ବି ତାଙ୍କ ପାଖକୁ ଯିବାକୁ ଆରମ୍ଭ କଲି । ସେଇ ଶିକ୍ଷକଙ୍କ ନାମ ସଚନ୍ ସାର । ମନେପଡ଼େ ମୁଁ ଖୁବ୍ ବଡ଼ ଅକ୍ଷର 'ଇ' ଲେଖିଥିଲି ମୋ ସ୍ଲେଟରେ । କିଛିଦିନ ପରେ ଆଉଜଣେ ମାଷ୍ଟର ଆସିଲେ । ତାଙ୍କ ନାମ ରାଜକୁମାର ମାଷ୍ଟର । ସେତେବେଳେ ମୋର ବୟସ ପାଞ୍ଚ ବର୍ଷ । ପଢ଼ିଲି ବର୍ଣ୍ଣବୋଧ । ତା'ପରେ ରଖାହେଲା ଶ୍ରୀ ରଜନୀକାନ୍ତ ରାୟଙ୍କୁ । 'କ' ମାନ ଓ 'ଖ' ମାନ ଏକ ବର୍ଷରେ ଶେଷକରି ସାତବର୍ଷର ବୟସରେ ପ୍ରଥମ ଶ୍ରେଣୀକୁ ଉଠିଲି (୧୯୫୯) । ତା'ପରେ ମୋତେ ପଠାଗଲା (ଚିନ୍ମୟୀ ବୃନ୍ଦାବନ ବିଦ୍ୟା-ପୀଠକୁ) ପ୍ରଥମ ଶ୍ରେଣୀରେ ଆସାମିଆ ସ୍କୁଲରେ ଭର୍ତ୍ତି କରାଇ ଦିଆହେଲା ।

ପ୍ରଥମ ଶ୍ରେଣୀରେ ପ୍ରଥମେ ପ୍ରଥମେ ବେଶୀ ଭଲ ଲାଗୁନଥିଲା । କିନ୍ତୁ ପଛରେ ଭଲହୋଇ, ଭଲ ପରୀକ୍ଷାଫଳ କରି ଦ୍ୱିତୀୟ ଶ୍ରେଣୀକୁ ଉନ୍ନୀତ ହେଲି (୧୯୬୦) । ପ୍ରଥମେ ମୋତେ ଶିକ୍ଷକ ଝିଅଙ୍କ ବେଞ୍ଚରେ ହିଁ ବସାଉଥିଲେ । ପ୍ରଥମେ ଆମର ଶ୍ରେଣୀ ଶିକ୍ଷକ ଥିଲେ ରଜନୀସାର । ସ୍କୁଲ୍‌କୁ ଆସିବା ସଙ୍ଗେ ସଙ୍ଗେ ମୋର ଅଭିଜ୍ଞତା ବଢ଼ିଥିଲା । ସ୍କୁଲ୍‌ରେ ମୁଁ କାହା ସାଥିରେ ଅଧିକ କଥା କହୁନଥିଲି । ଖୁବ୍ ଲାଜ ମାଡ଼ୁଥିଲା । ଯଦି କହୁଥିଲି, ତା ହେଲେ ହିନ୍ଦୀରେ ହିଁ କହୁଥିଲି । ଅନ୍ୟଭାଷା କହିଲେ ଲାଜ ଲାଗୁଥିଲା । ପ୍ରଥମ କ୍ଲାସରେ (୧୯୫୯) ମୁଁ ଜଣେ ଝିଅକୁ ଭଲ ପାଉଥିଲି । ସେତେବେଳେ ମୋର ବୟସ ଥିଲା ସାତବର୍ଷ । ସେତେବେଳର ଭଲପାଇବା ଏବଂ ଏକବର୍ଷ ପୂର୍ବର (୧୯୬୭) ଭଲପାଇବା ଏବଂ, ବର୍ତ୍ତମାନର (୧୯୬୮) ଭଲପାଇବା ଭିତରେ ଅନେକ ପାର୍ଥକ୍ୟ । ଦ୍ୱିତୀୟ ଶ୍ରେଣୀରେ ମୁଁ ପଢ଼ାଶୁଣାରେ ବହୁତ ଖରାପ ହୋଇଗଲି । ମୋର ଜୀବନ ପ୍ରତି ଧିକ୍‌କାର ଆସିବାକୁ ଲାଗିଲା । "ମିଶ୍ରଭାଗ"ଟା କିଛି ବି ପାରିଲି ନାହିଁ । ଖାଇବା ଛୁଟୀ ପରେ ଘରକୁ ଚାଲିଯାଉଥିଲି । ଏଇ ସବୁ କାଣ୍ଡ ଦେଖି ଦିନେ ମୋତେ ଶିକ୍ଷକ ଡାକି କହିଲେ— "ତୋର କ'ଣ ପଢ଼ିବା ପାଇଁ ଇଚ୍ଛା ଅଛି ?" ମୁଁ କହିଲି— ଅଛି ।

୧୯୬୦ରେ ଆମେ ସମସ୍ତେ ଆମ ଗାଁକୁ ଏକମାସପାଇଁ ଗଲୁ । ଖୁବ୍ ଆନନ୍ଦ !! ଗାଡ଼ି ଛାଡ଼ିଦେଲା । ମନରେ ଖୁବ୍ ଖୁସୀ ! ଆଜି ପ୍ରଥମ ଥର ପାଇଁ ଆସାମ ଛାଡ଼ି ଯିବ । ଏଇ ପ୍ରଥମ ମୋର ରେଲରେ ବସିବା । ଫକୀରଗ୍ରାମଠାରେ ଆମେ ପ୍ରଥମେ ଗାଡ଼ି ପରିବର୍ତ୍ତନ କଲୁ । ଗାଡ଼ି ଚାଲୁଅଛି । ମୁଁ ଝରକା ପାଖରେ ବସିବାକୁ ଭଲପାଏ । କେତେ ପ୍ରାନ୍ତର, ଗଛ, ପର୍ବତ ଯେ ଚାଲିଗଲା, ତା'ର ଠିକଣା ନାହିଁ । କେତେ

ଧରଣର ମଣିଷ ଦେଖିଲି, କେତେ ଜିନିଷ ଦେଖିଲି, ତା'ର ଠିକଣା ହିଁ ନାହିଁ । ରାଜସ୍ଥାନରେ ! ମୁଁ ଆଜି ରାଜସ୍ଥାନରେ ! ମରୁଭୂମିରେ ! ଯେଉଁ ମରୁଭୂମିରେ ପ୍ରତାପ-ସିଂହ ଜନ୍ମ ଗ୍ରହଣ କରିଥିଲେ । ମୋର ମାମୁଁଘର । ପକ୍କା ଦୋତାଲା ଘର । ମାମୁଁଅଜା, ମାମୁଁଆଈ, ମାମୁଁ, ମାଈଁଙ୍କ ସାଥିରେ ପ୍ରଥମ ଦେଖା । ଦୁଇଦିନ ପାଇଁ ଆମର ଜନ ଗାଁକୁ ଗଲୁ । ସବୁ ବାଲି, ଧୂଳି ଓ ଅଳଙ୍କାରରେ ଭର୍ତ୍ତି ! ବହୁତ ଅଟ୍ଟାଳିକା, ମନ୍ଦିର ଆଦି ଦେଖୁ ଦେଖୁ ପଚିଶ ଦିନ କଟିଗଲା । ଆଉଥରେ ଜନ୍ମଭୂମି ଆସାମର କଥା ବାରମ୍ବାର ମନେପଡ଼ିଲା । ଆଉଥରେ ସବୁଜଗଛ ଦେଖିବା ପାଇଁ ମନ ବ୍ୟାକୁଳ ହେଲା ।

ମା'କୁ ଦେଖିବାକୁ ନପାଇ ଶିଶୁ ଯେମିତି କାତର ହୋଇଯାଏ, ଠିକ୍ ସେଇପରି ଭାବେ ହିଁ ମୁଁ ବି ମୋର ଜନ୍ମଭୂମି ପାଇଁ କାତର ହୋଇଗଲି ! ଆଉଥରେ ଆସାମ ଦିଗରେ ଫେରିଲୁ । ଦିନଟିଏ ପାଇଁ ଜୟପୁରଟେ ରହିଲୁ । ରାମ୍ବାଘାଟ, ଚଡ଼ିଆଖାନା ଇତ୍ୟାଦି ଅନେକ କିଛି ଦେଖିଲି । ରାତିରେ ଗାଡ଼ିର ଝରକା ଦେଇ ଦିଲ୍ଲୀର ବତିଖୁଣ୍ଟ ଦେଖି ଆଶ୍ଚର୍ଯ୍ୟ ହେଲି । ଆଉଥରେ ଆସାମ ଭୂଇଁରେ ପାଦଦେଲି । ମୋର ଜନ୍ମଦାତ୍ରୀ ମାତୃସ୍ୱରୂପା ଆସାମ ମାଟିର ବୁକୁରେ ଆସି ପାଦଦେଲି । ଦ୍ୱିତୀୟ ଶ୍ରେଣୀର ବାର୍ଷିକ ପରୀକ୍ଷାରେ ଅଙ୍କରେ ଫେଲ୍ ହେଲି । ଶ୍ରୀ ରଜନୀକାନ୍ତ ରାୟ ମୋର ଘରୋଇ ଶିକ୍ଷକ ଥିଲେ । ପୁଣି ମୋର ସ୍କୁଲର ଅଙ୍କ ଶିକ୍ଷକ ମୋର ଘରୋଇ ଶିକ୍ଷକଙ୍କର ଭାଇ ହୁଅନ୍ତି ହେବେ । ରଜନୀ ମାଷ୍ଟର ତାଙ୍କଠାରୁ ଖାତାଟି ଆଣି ଅଙ୍କସବୁ କାଟିଦେଲେ । ଏଇଭଳି ମୁଁ ଦ୍ୱିତୀୟ ଶ୍ରେଣୀ ପାସ କଲି । ସେତେବେଳେ ମୋର ବୟସ ହେବ ନ' ବର୍ଷ ।

ସେତେବେଳେ ହାଇସ୍କୁଲର ହେଡ୍ ପଣ୍ଡିତ ଥିଲେ ଶ୍ରୀ କାମିନୀ କୁମାର ରାୟ । ରଜନୀ ମାଷ୍ଟର ମୋତେ ଦ୍ୱିତୀୟ ଶ୍ରେଣୀର ସାର୍ଟିଫିକେଟ ଆଣି ଚତୁର୍ଥ ଶ୍ରେଣୀ (୧୯୬୧) ରେ ଭର୍ତ୍ତି କରାଇ ଦେଲେ । ଏମିତି ଅବସ୍ଥାରେ ଯେ ଜଣେ ପିଲା ପଢ଼ାଶୁଣାରେ କେମିତି ହୋଇପାରେ, ତାହା ସହଜେ କଳ୍ପନା କରାଯାଇ ପାରିବ । ଛୋଟବେଳୁ ମୋର ସାଧୁ ସନ୍ନ୍ୟାସୀ ହୋଇ ଭଗବାନଙ୍କୁ ଡାକିବାର ଇଚ୍ଛା । ପ୍ରାୟ ଆଠ ନଅ ବର୍ଷ ବୟସରୁ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେଇଭାବ ବେଶୀ ହେବାପାଇଁ ଲାଗିଲା । ମୁଁ ଭାବୁଥିଲି, ମଣିଷ କେମିତି ତପସ୍ୟା କରି ସିଦ୍ଧିଲାଭ କରେ । (୧୯୬୧ ଜୁନ୍) ମୋର ଷାଣ୍ମାସିକ ପରୀକ୍ଷାର ସମୟ ଆସିଛି । ଇତିହାସ ଖାତା ସାଦା (ନିଲ୍) । ଭୂଗୋଳ ଖାତାରେ କେଇଟି ବାକ୍ୟ ଲେଖିଦେଲି । ଅଙ୍କ ପରୀକ୍ଷାଦିନ ଗୋଟିଏ ଅଙ୍କ କଷିଲି । ବିଜ୍ଞାନ ଖାତାରେ କେବଳ ଗ୍ରହ ଗୁଡ଼ିକର ନାମ ଲେଖିଲି । ଆସାମୀୟା ବି ସେମିତି ହିଁ ହେଲା । କେବଳ ଇଂରାଜୀ ଓ ହିନ୍ଦୀରେ ଅଳ୍ପ ଭଲ ହୋଇଥିଲା ।

ବାର୍ଷିକ ପରୀକ୍ଷାରେ ତ ଫେଲ୍ ହେଲି । ରଜନୀ ସାର କହିଚୋଚି ହେଡ୍‌ମାଷ୍ଟରଙ୍କୁ ଗୋଡ଼ ଧରି ପାଶ୍ କରେଇଦେଲେ । ମୁଁ କ୍ଲାସ୍‌ରେ ବହୁତ କମ କଥାବାର୍ତ୍ତା

କରୁଥିଲି । ବହୁତ ଶାନ୍ତଶିଷ୍ଟ ଥିଲି । ଖେଳାଖେଳରେ ମୋର ଇଚ୍ଛା ନାହିଁ । ସାମାନ୍ୟ ଖେଳୁଥିଲି । ଖେଳସାଥି ମାନଙ୍କ ଭିତରେ ମୋହନ ଲାଲ, ମିର୍ଜା ମଲ ଆଦି ପ୍ରଧାନ ଥିଲେ । ବେଳେ ବେଳେ ତାସ୍ ଖେଳୁଥିଲି । ମୁଁ ପଢାଶୁଣାରେ ବହୁତ ଦୁର୍ବଳ ଥିଲି । ମୋର ମନ ଉପରେ ଧକ୍କା (ହୀନମ୍ମନ୍ୟ ମନୋବୃତ୍ତି) ଉପସ୍ଥିତ ହୋଇଥିଲା । ମୋର ଅଷ୍ଟମ ଶ୍ରେଣୀର ଷାଣ୍ମାସିକ ପରୀକ୍ଷା ଆସିଯାଇଛି । ପଢାଶୁଣା ଠିକଏ ବି କରିନାହିଁ । ପରୀକ୍ଷା ଆରମ୍ଭ ହେବାର ଘଣ୍ଟାଏ ପୂର୍ବରୁ ରସି ଧରି ଆମ୍ବଗଛ ତଳକୁ ଗଲି । ଦଉଡ଼ି ଦେଇ ଆତ୍ମହତ୍ୟା କରିବା ପାଇଁ । ଆଉ ଶୁଣିଥିଲି ମରିବା ପୂର୍ବରୁ ଭଗବାନର ନାମ ନେଲେ ଲୋକ ସ୍ୱର୍ଗକୁ ଯାଆନ୍ତି । ସେଥିପାଇଁ ଗଳାରେ ଫାଶୀ ଦେଇ ଖଣ୍ଡିଏ ଝୁଲୁରି କାଠ ଉପରେ ଠିଆ ହୋଇଥିଲି । ଭଗବାନର ନାମ ନେବାପାଇଁ ଆରମ୍ଭ କଲି । ଏତିକିବେଳେ ଜୀବନ ପ୍ରତି ମୋହ ଉପଗତ ହେଲା । ପୁଣି ଫାଶୀ ଖୋଲିଦେଲି । ଭଗବାନର ନାମ ନେବାରୁ ସେ ମୋତେ ବଞ୍ଚାଇଲେ ।

ପରୀକ୍ଷା ଦେବାପାଇଁ ଗଲି ! ପିଲା ଦିନରୁ ମୋର ଧର୍ମ ପ୍ରତି ବିଶ୍ୱାସ ଥିଲା । ମୋର ଜୀବନର ଉଦ୍ଦେଶ୍ୟ ଥିଲା ବନକୁ ଯାଇ କଠୋର ତପସ୍ୟା କରି ଭଗବାନଙ୍କୁ ଲାଭ କରିବା । ମୁଁ ଛୋଟ ବେଳରୁ ଭୂତ, ପ୍ରେତ, ଦେବତା, ଆତ୍ମା ଇତ୍ୟାଦି ସକଳ ବସ୍ତୁରେ ବିଶ୍ୱାସ କରୁଥିଲି । ମୁଁ ନବମ ଶ୍ରେଣୀରେ ପଢୁଥିଲି । ବାର୍ଷିକ ପରୀକ୍ଷାଟି ଆସିଯାଇଛି । ସେଇ ସମୟରେ ଗ୍ୟେଥ୍ ମଲ୍ଲ ନାମକ ଜଣେ ବ୍ରାହ୍ମଣ ଆମ ଘରେ ଥିଲା । ତା'ର ଧର୍ମ ପ୍ରତି ଜ୍ଞାନ ଥିଲା । ସେ ଆମମାନଙ୍କୁ ଗୀତା, ରାମାୟଣ ଆଦି ପଢି ଶୁଣାଇ ଥିଲା । ମୁଁ ପଢାଶୁଣା ବାଦ ଦେଇ କେବଳ ଏଇ ଧର୍ମଗ୍ରନ୍ଥ ଗୁଡ଼ିକ ଶୁଣିଥିଲି । ଗୀତା ଓ ରାମାୟଣ ଏଇ ଦୁଇଟାହିଁ ମୋତେ ଖୁବ୍ ଭଲ ଲାଗିଲା । କିନ୍ତୁ ଏହା କରିବା ସତ୍ତ୍ୱେ ମୁଁ ବାର୍ଷିକ ପରୀକ୍ଷା ପାଶ୍ କରିଗଲି ।

ମୁଁ ଯେତେବେଳେ ଦଶମ ଶ୍ରେଣୀରେ ପଢେ, ସେତେବେଳେ ଗୀତା ପ୍ରେସଠାରୁ ଅନେକ ଧାର୍ମିକ ପୁସ୍ତକ ମଗେଇଥିଲି ଓ ପଢିଥିଲି । ସେଇ ବହି ଗୁଡ଼ିକ ଭିତରେ ଥିଲା- ୧- ଗୀତା, ୨- ମାନସ ରହସ୍ୟ, ୩- ଦିବ୍ୟ, ସନ୍ଦେଶ, ୪- ଭଗବତ୍ ସାକ୍ଷାତ୍କାର କେ କିତ୍ନେ ନାମ୍ ଜପ୍ ହିଁ ଏକମାତ୍ର ସାଧନ୍ ହୈ, ୫- ଆତ୍ମୋଦ୍ଧାର କେ ସାଧନ, ୬- ଈଶ୍ୱରତତ୍ତ୍ୱ ଇତ୍ୟାଦି । ଆହୁରି ଅନେକ ବହି ଆଣେଇଥିଲି, ପଢିଥିଲି ।

॥ ୧।୧।୧୯୬୯ : ବୁଧବାର ॥ ଆଜି ଧୁବ୍ରିରେ ମୋର ଦ୍ୱିତୀୟ ଦିନ । ଆମେ ପି.ୟୁ. ଟେଷ୍ଟ ପରୀକ୍ଷା ଦେବା ପାଇଁ ଆସିଛୁ । ପରୀକ୍ଷା ୩ ତାରିଖରେ ଆରମ୍ଭ ହେବ । ମୋର ସାଙ୍ଗରେ ହୀରାଲାଲ ମାଲୁ । ଆମେ ଧର୍ମଶାଳାରେ ରହୁଛୁ ।

॥ ୨।୧।୧୯୬୯ : ଗୁରୁବାର ॥ ରାତିରେ ମୁଁ ଏବଂ ହୀରାଲାଲ ଗୋଟିଏ ବେଡରେ ଯୋଡ଼େଇ ହୋଇ ଶୋଇଛୁ । ମୁଁ ହୀରାଲାଲକୁ ଭଲପାଏ । ଆମ ସାଙ୍ଗରେ ଆଜି

ଗୋବିନ୍ଦ ଶୋଇଛୁ । ସନ୍ଧ୍ୟା ସମୟରେ ତିନିଜଣ ଯାକ ବୁଲିବାକୁ ବାହାରିଲୁ । ପଢ଼ାପଢ଼ି ଭଲଭାବେ ଚାଲିଛି ।

॥ ୩।୧।୧୯୬୯ : ଶୁକ୍ରବାର ॥ ଆଜିଠାରୁ ପରୀକ୍ଷା ଆରମ୍ଭ ହେଲା । ଆଜି ଇଂରାଜୀର ପରୀକ୍ଷା । ଭଲ ଭାବରେ ଦେଲି (୫୦ ଖଣ୍ଡେ ରହିବ ବୋଲି ଆଶା ଅଛି) । ଆଜି ମୋର ପୁରୁଣା କଲମଟା ହଜି ଯାଇଛି, ଯେଉଁଥିରେ ମୁଁ ସ୍କୁଲର ଫାଇନାଲ ପରୀକ୍ଷା ଦେଇଥିଲି ।

॥ ୪।୧।୧୯୬୯ : ଶନିବାର ॥ ଆଜି ଅସମୀୟା ପରୀକ୍ଷା, ସାଧାରଣ ହୋଇଛି । ପାସ କରିବ (୪୦।୪୫ ଖଣ୍ଡେ ରହିବ) । ଘରେ ବହୁତ ଆରାମରେ ଅଛି। ଡାମପା ଭିତରେ ଯାଏ ।

॥ ୫।୧।୧୯୬୯ : ରବିବାର ॥ ଆଜି ବନ୍ଦ । ଗୋଟିଏ କଲମ କିଣିଲି । ଏଠାରେ ଗୋଟିଏ ବୁଢ଼ା ଆମର ହସ ପାଇଁ ଖୋରାକ ଯୋଗେଇଛି । ଯାହାର ନାମ ମୁଁ ଦେଇଥିଲି, ଷ୍ଟାଇଲିଷ୍ଟ ଓଲଡ଼ ।

॥ ୬।୧।୧୯୬୯ : ସୋମବାର ॥ ଆଜି ରାଜନୀତି ବିଜ୍ଞାନର ପରୀକ୍ଷା । ଏକ ପ୍ରକାର ହୋଇଛି । (୩୫ ଖଣ୍ଡେ ରହିବ)

॥ ୭।୧।୧୯୬୯ : ମଙ୍ଗଳବାର ॥ ଆଜି ଇତିହାସର ପରୀକ୍ଷା, ଭଲ ହୋଇଛି । ପାଞ୍ଚଟି ପ୍ରଶ୍ନ ପଢ଼ିଥିଲି । ଯେସବୁ ପରୀକ୍ଷାରେ ପଡ଼ିଥିଲା । ଦିନଟି ଭଲଭାବରେ ଯାଇଛି ।

॥ ୮।୧।୧୯୬୯ : ବୁଧବାର ॥ ବନ୍ଦ । କାରଣ ଆଜି ଅର୍ଥନୀତିର ପରୀକ୍ଷା । ମୋର ଏଇଟା ନାହିଁ । ଗୋଧୂଳିରେ ସିନେମା ଦେଖିବାକୁ ଗଲୁ । (ମୁଁ, ହୀରାଲାଲ ଏବଂ ଗୋବିନ୍ଦ) । ସିନେମାର ନାମ 'ମେରେ ଲାଲ୍' ।

॥ ୯।୧।୧୯୬୯ : ଗୁରୁବାର ॥ ଆଜି ଲଜିକ୍ ପରୀକ୍ଷା । ଭଲ ହେଇନି । (୨୦ ଖଣ୍ଡେ ରହିପାରେ) । ଅନ୍ୟ ଉପରେ ଭରସା କରି ଠୋକର ଖାଇଛି ।

॥ ୧୦।୧।୧୯୬୯ : ଶୁକ୍ରବାର ॥ ସଂସ୍କୃତ ପରୀକ୍ଷା ଭଲ ହୋଇଛି । (୩୫ ଖଣ୍ଡେ ରହିବ) । ଆଜି ପରୀକ୍ଷାର ଶେଷ ଦିନ । ସିନେମା ଦେଖିବାକୁ ଗଲୁ । ନାମ 'ସାଗିଦ' ମୋ ସାଙ୍ଗରେ ହୀରାଲାଲ ଥିଲା ।

॥ ୧୧।୧।୧୯୬୯ : ଶନିବାର ॥ ସକାଳ ଟ୍ରେନରେ ଗୋଲକଣ୍ଡା ଆସିଲି । ଦିନ୍ୟାରେ ବୁଲିବାକୁ ଗଲି, ଗୋବିନ୍ଦ, ହୀରାଲାଲ, ପ୍ରଣବ, ନରେଶ ଏବଂ ଗୋପାଳ ଏମାନଙ୍କ ସହିତ ।

॥ ଫେବୃୟାରୀ ଓ ମାର୍ଚ୍ଚ, ୧୯୬୯ ॥ ଏଇ ଦୁଇ ଦିନ ମାସ ଡାଇରୀ ଲେଖା ହୋଇନି । ଏଇ ଦୁଇ ଦିନ ମାସ ପ୍ରାୟ ମୁଁ ଅଳ୍ପ ଅଳ୍ପ ପଢ଼ିଥିଲି । ଯେପରିକି ମୁଁ କୌଣସି ପ୍ରକାରେ ମୁଁ ପାସ କରିପାରେ । ମୋର ଗୋଟିଏ ମାତ୍ର ଚିନ୍ତାର ବିଷୟ

ହୀରାଲାଲ । ଦିନରେ କେତେ ବେଶୀ ସମୟ ତାର ସାଙ୍ଗରେ ମୁଁ ରହିପାରେ ! ହୀରାଲାଲକୁ ଖୁସି କରିବା ମୋର ଗୋଟିଏ ମହତ୍ତ୍ୱପୂର୍ଣ୍ଣ କାମ ଥିଲା । ମୁଁ ହୀରାଲାଲର ହାତର କଣ୍ଢେଇ ହୋଇଯାଇଥିଲି । ବେଶୀ ସମୟ ହୀରାଲାଲ ନିକଟରେ ଅତିବାହିତ କରୁଥିଲି । ହୀରାଲାଲ ଯାହା ଇଚ୍ଛା କରିଥିଲା ତାକୁ ଦେବାପାଇଁ ମୁଁ ପ୍ରସ୍ତୁତ ଥିଲି ।

॥ ୧।୪।୧୯୬୯ : ମଙ୍ଗଳବାର ॥ ମୁଁ ବର୍ତ୍ତମାନ ଧୁବ୍ରିକୁ ପରୀକ୍ଷା ଦେବାପାଇଁ ଆସିଛି । (ଏଥର ମୁଁ ଏବଂ ହୀରାଲାଲ ଗୋଟିଏ ଯାଗାରେ ଅଛୁ) । ଗୋବିନ୍ଦ ପ୍ରାୟ ପ୍ରତିଦିନ ଏଠାକୁ ଆସେ । ପଢ଼ାପଢ଼ି ଆଦୌ ହେଉନାହିଁ । ଏହାର ପ୍ରଧାନ କାରଣ ହେଉଛି ହୀରାଲାଲ । କାରଣ ମୁଁ ତାକୁ ଭଲପାଏ । ଅତି ଅନ୍ତରଙ୍ଗ ଭାବରେ ଭଲପାଏ । ତାର ଗୁଣ ଗୁଡ଼ାକୁ ମୁଁ ଭଲପାଏ ନାହିଁ । କିନ୍ତୁ ତା'ର ଦେହକୁ ଭଲପାଏ ।

ମୋତେ ଛାଡ଼ି ହୀରାଲାଲ ଅନ୍ୟମାନଙ୍କ ସାଙ୍ଗରେ ବୁଲାବୁଲି କଲେ ମୋର ହିଂସା ହୁଏ । ହୀରାଲାଲ ଯେ କେବଳ ମୋର ସହିତ ବୁଲାବୁଲି କରୁ ଏଇଟା ମୁଁ ଚାହେଁ । ମୋ ସହିତ କେବଳ କଥାବାର୍ତ୍ତା କରୁ । ଦେହକୁ ଦେହ ଲଗାଲଗି ହୋଇ ଗୋଟିଏ ବେଡ଼ିକେଇ ତଳେ ଆମେ ଦୁଇଜଣ ଶୋଉ । ରାତିରେ ଶୋଇବା ସମୟରେ ମୁଁ ହୀରାଲାଲକୁ କୁଣ୍ଢାଇ ଶୋଇବାକୁ ଇଚ୍ଛାକରେ । ମୁଁ ଚାହେଁ ସେ ମୋତେ ବି ଆଲିଙ୍ଗନ କରୁ । ପ୍ରଥମ ଦୁଇଦିନ ଲଗାଲାଗି ହୋଇ ଶୋଇ ପଡ଼ିଲୁ । କିଛିଦିନ ପରେ ଆମ ଭିତରେ ଯୌନ ସମ୍ପର୍କ ଆରମ୍ଭ ହେଲା ।

ହୀରାଲାଲ ମୋ ସହିତ ଯୌନ ସମ୍ପର୍କ ରଖିଥିଲା । ମୁଁ ହୀରାଲାଲ ପାଇଁ ପାଗଳ । ମୋର ପଢ଼ାପଢ଼ି ହୋଇ ପାରୁନାହିଁ । ପଢ଼ାପଢ଼ି ଅତି ଖରାପ ହେଉଛି । ପ୍ରତି ସନ୍ଧ୍ୟାରେ ମୁଁ ଏବଂ ହୀରାଲାଲ, ଗୋବିନ୍ଦ ଯେଉଁଠି ରହେ ସେଠାକୁ ଯାଉଥିଲୁ । ତା'ପରେ ମୁଁ, ହୀରାଲାଲ ଏବଂ ଗୋବିନ୍ଦ ବୁଲାବୁଲି କରୁଥିଲୁ । ବୁଲାବୁଲି କରି ନିଷ୍ଠା ହୋଟେଲରେ ଚାହା ଖାଉଥିଲୁ । ଅମଳ ସହିତ ମୋର ଘନିଷ୍ଠତା ହୁଏ ପରୀକ୍ଷା ଦିନ ମାନଙ୍କରେ । ପ୍ରଣବ ମଝିରେ ମଝିରେ ପଢ଼ିବାକୁ ଆସୁଥିଲା । ବାହାରକୁ ଯେତେବେଳେ ଯାଉଥିଲୁ ସେତେବେଳେ ଘରେ କୋଲପ ପକେଇ ଯାଉଥିଲୁ ଏବଂ କବାଟରେ ଗୋଟିଏ କାଗଜରେ 'ଆମେ ଅମୁକ ଯାଗାକୁ ଯାଉଛୁ' ଲେଖି ରଖି ଯାଉଥିଲୁ । "କୃପୟା ଆପ୍ ୪.୩୦ ପର ମିଲିଏ" ।

॥ ୭।୪।୧୯୬୯ : ସୋମବାର ॥ ଆଜି ଇତିହାସର ପରୀକ୍ଷା ହେଉଛି । ଗୋଟିଏ ପ୍ରକାର ହୋଇଛି । ଆସନ୍ତା କାଲି ସଂସ୍କୃତ ପରୀକ୍ଷା ହେବ । ମୁଁ ଏବଂ ହୀରାଲାଲ ମାଡ଼ଗୋଳ ଏବଂ କୁସ୍ତି କସରତ କରି ଖୁସିରେ ଅଛୁ । ଭାବୁଛି କୌଣସି ପ୍ରକାରେ ସଂସ୍କୃତ ପରୀକ୍ଷା ସରିଗଲେ ଯାଏ । ମଝିରେ ମଝିରେ ଆଲୁଅ ହଇରାଣ କରୁଛି । ଅବଶ୍ୟ ପଢ଼ାପଢ଼ିରେ କୌଣସି ପ୍ରକାରର କ୍ଷତି ହୋଇନାହିଁ ।

ଆଜି ଆମର ପି.ୟୁ. ପରୀକ୍ଷା ସରିଲା । ଆମେ ଧୂରୁଅରେ ସତର ଦିନ ଧରି ଅଛୁ । ଖୁବ୍ ଆରାମରେ ଦିନ ସବୁ କଟିଗଲା । ଆମେ ତିନିଜଣ— ପ୍ରକୃତରେ ଦୁଇଜଣ...... ମୁଁ, ହୀରାଲାଲ ମାଲୁ ଏବଂ କେବେ କେବେ ଗୋବିନ୍ଦ ଦତ୍ତ । ମୁଁ ଏବଂ ହୀରାଲାଲ ଗୋଟିଏ କମ୍ବଳ ତଳେ ଶୋଉଥିଲୁ । ମୁଁ ହୀରାଲାଲକୁ ଭଲପାଏ । ଆମର ବୟସର ପୁଅମାନେ ଯାହା କରିଥାନ୍ତି, ଆମେ ସେସବୁ କରୁଥିଲୁ । ଖେଳାଖେଳିରେ, ବୁଲି-ବୁଲିରେ, ସିନେମାରେ, କଲେଜରେ, ରାସ୍ତାରେ, ବଜାରରେ ସବୁ ସମୟରେ ମୁଁ ଏବଂ ହୀରାଲାଲ ସାଥି ହୋଇ ଥାଉଁ । ମୁଁ ତାକୁ ଭଲପାଏ । ସେ ମୋତେ ଭଲପାଏ କି ନାହିଁ ମୁଁ ଜାଣିନି । ଆମେ ଆଜି ସିନେମା ଦେଖିବାକୁ ଗଲୁ (ବାବୁରାମ, ଗୋବିନ୍ଦ, ମୁଁ, ହୀରାଲାଲ) । ଦୁଇଟା ସୋ ଆମେ ଦେଖିଲୁ । ରୂପାଲୀ ସିନେମା ହଲରେ ଆମେ ଦେଖିଲୁ 'ଚିତ-ଚୋର', ଏବଂ ବସନ୍ତ ସିନେମା ହଲରେ ଦେଖିଲୁ 'ଅମର ଦୀପ୍' । ଖୁବ୍ ପୁରୁଣା ଏବଂ ଏଇଟା ମୋର ଆଗରୁ ଦେଖା ହୋଇଥିଲା ।

॥ ୧୦।୪।୧୯୬୯ : ଗୁରୁବାର ॥ ଅଢ଼େଇ ତିନିମାସ କଲେଜ ବନ୍ଦ । କ'ଣ କରିବି ନ କରିବି ଭାବୁଛି । ମୁଁ ଘରକୁ ଯିବା ପାଇଁ ସ୍ଥିର କଲି । ହୀରାଲାଲ ତ ଘରକୁ ଯିବ । କାରଣ ତାର ମାଉସୀ ଝିଅର ବାହାଘର । ଗୋପାଳ ସିଲଂ ଯିବାକୁ କହିଲା । ମୁଁ ତାକୁ କହିଲି— ଯଦି ଘରକୁ ନଯାଏ ତା ହେଲେ ସିଲଂ ଯିବି ।

॥ ୧୧।୪।୧୯୬୯ : ଶୁକ୍ରବାର ॥ ରାତି ୭ଟା । ମୋର ବାପାଙ୍କୁ ମୋହନ ପଚାରିଲେ 'ମୁଁ ଶୁଣିଛି ଯେ ରାଜୁ ଘରକୁ ଯିବ ?' ବାପା କହିଲେ, 'ମୋତେ ଯଦି ନ ଜଣାଇ ଯାଏ ତାହେଲେ ମୁଁ କେମିତି ଜାଣିବି ।' ଯାଇପାରେ । ବର୍ତ୍ତମାନ ଶିକ୍ଷିତ ହୋଇଛି । ମୁଁ ଶୋଇ ଶୋଇ ସବୁ ଶୁଣୁଥିଲି । ମନରେ ଖୁବ୍ ଆଘାତ ଲାଗିଲା ।

॥ ୧୨।୪।୧୯୬୯ : ଶନିବାର— ସମସ୍ତ ରାତି ନଅଟା । ବାପା ଯେତେବେଳେ ଶୋଇବାକୁ ଗଲେ, ମୁଁ ସେତେବେଳେ ବାପାଙ୍କୁ କହିଲି, 'ବାପା, ଏଠାରୁ କେତେ-ଜଣ ଘରକୁ ଯାଉଛନ୍ତି । ମୁଁ ସେମାନଙ୍କ ସାଙ୍ଗରେ ଘରକୁ ଯାଇ ବୁଲି ଆସିବି କି ? ବାପା ମୋତେ ପଚାରିଲେ, 'କାହିଁକି ?' ମୁଁ କହିଲି— 'ଏମିତି ବୁଲିବାକୁ' । ବାପା କହିଲେ— 'ଯିବା ଦରକାର ନାହିଁ' । ସେତେବେଳେ ମୁଁ କହିଲି ତେବେ ମୁଁ 'ସିଲଂ ଯିବି' ? ବାପା କହିଲେ, 'ପଢ଼ାପଢ଼ି କର ଏବଂ କାମ କର' । ମୋତେ ଏତେ କଷ୍ଟ ଲାଗିଲା ଯେ ତାହା କଥାରେ କୁହାଯାଇ ନପାରେ ।

॥ ୧୩।୪।୧୯୬୯ : ରବିବାର ॥ ମନ ଖୁବ୍ ଖରାପ ଲାଗୁଛି । ବାରମ୍ବାର ରାତିରେ ବାପାଙ୍କର କଥା ମନେ ପଡୁଛି । ମୋ ନିଜକୁ ଖୁବ୍ ତୁଚ୍ଛ ଲାଗୁଛି । ବାପା ବୋଉଙ୍କ ଉପରେ ଖୁବ୍ ରାଗ ହେଉଛି । ଆଜି ବାପା, ବୋଉଙ୍କ ସହିତ କଥା କହିଲି ନାହିଁ । ସାତେ ନଅଟା ସମୟରେ ହୀରାଲାଲ ରାଜସ୍ଥାନ ଗଲା । କିନ୍ତୁ ଆଜି ସେ ମୋତେ ଦେଖା

କରିନାହିଁ ।· ବୋଧେ ସମସ୍ତ ପାଇନ । ସନ୍ଧ୍ୟାବେଳେ ଖୁବ ଖରାପ ଲାଗିଲା । କାରଣ ହୀରାଲାଲ ନାହିଁ । ହୀରାଲାଲ ବିନା କିଛୁ ଭଲ ଲାଗୁନ । ଆଜି 'ଚଡ଼କ' ପୂଜା । ମୁଁ ଏବଂ ପ୍ରଣବ ଗୋପାଳର ଘରକୁ ଗଲୁ । ତା'ପରେ ତିନିଜଣ ମେଳା ଦେଖିଲୁ । ମେଳାରେ ବାବୁରାମର ଦେଖା ହେଲା । ବାବୁରାମକୁ ସାଙ୍ଗରେ ଆଣିନଥିଲୁ ବୋଲି ସେ ଖୁବ ମନ ଦୁଃଖ କଲା । ମେଳାରେ ଦେଖାହେଲା— ହୀରାଲାଲର ଭାଇ ପାନ୍ନାଲାଲ, କଲେଜର ବନ୍ଧୁ ଶଶଧର, ଅରୁଣ, ସୁଭାଷ, ଶରଦ, ଜଗଦ୍ବୀପେନ୍ଦ୍ର, ହୀରେନ, ରଞ୍ଜିତ ଇତ୍ୟାଦି ।

।। ୧୪।୪।୧୯୬୯ : ସୋମବାର ।। ହୀରାଲାଲ ବିନା ଭଲ ଲାଗୁନାହିଁ । ମନ ଖୁବ୍ ଖରାପ । ଶରୀରରେ ଶକ୍ତି ପାଉନାହିଁ । ଆଜି ବନ୍ଧ । କିଛୁ ଭଲ ଲାଗୁନ ହୀରାଲାଲ ବିନା । ଗୋଟିଏ ଦିଗରେ ହୀରାଲାଲ ଏବଂ ଅନ୍ୟ ଦିଗରେ ବାପାଙ୍କର ମୋ ପ୍ରତି ହେୟ ବ୍ୟବହାର ।

।। ୧୫।୪।୬୯ : ମଙ୍ଗଳବାର ।।

ଆଜି ୬।୩୦ରେ ଉଠିଲି । ଉଠି ଆଖି ମଳାମଳି କଲି । ବାପା ରାଗ କରି କହିଲେ ୮ଟା ପର୍ଯ୍ୟନ୍ତ ଶୋଇରହି । ସାଓ୍ୱାର ଏବଂ ମୋର ଜ୍ୟେଷ୍ଠ ଭାଇ ମଧ୍ୟ ଶୋଇଛନ୍ତି, ଅଥଚ ବାପା କେବଳ ମୋତେ ହିଁ କହନ୍ତି । ବାପା କାରଖାନାକୁ ଚାଲିଗଲେ । ମୁଁ ଉଠି ବସିଲି । ହାତ ମୁହଁ ଧୋଇ ଚା' ଖାଇ 'ପଞ୍ଚ କନ୍ୟା' ପଢ଼ିବା ଆରମ୍ଭ କଲି । ପ୍ରାୟ ନଅଟା ସମୟରେ କେତେ ଗୁଡ଼ିଏ ପୁରୁଣା ପେପର ନେଇ (ଆମେ ଗଢ଼ିଥିବା 'ଅଗ୍ରଦୂତ' କ୍ଲବ ପାଇଁ) ପ୍ରଣବର ଘର ଆଡ଼କୁ ଚାଲିଲି । ରାସ୍ତାରେ ନନ୍ଦଲାଲ ସହିତ ଦେଖାହେଲା । ମୁଁ କହିଲି 'ଚାଲ କ୍ଲବକୁ ଯିବା' । ସେ କହିଲା ନା, ଆଜି ମୁଁ ଯାଇ ପାରିବନି । କାରଣ ଦୋକାନରେ ବାପା ନାହାନ୍ତି । ତାପରେ କ୍ୟାଲେଣ୍ଡର କଥା ପଚାରିଲୁ ସେ କାଲି ନେଇଯିବା ପାଇଁ କହିଲା । ତା'ପରେ ରାସ୍ତାରେ ବିମଳ କର୍ମକାରର ସହ ଦେଖାହେଲା । ତା ସାଙ୍ଗରେ ପ୍ରଣବର ଘର ଆଡ଼କୁ ଚାଲିଲୁ । ରାସ୍ତାରେ ତା ସହିତ ଆଲୋଚନା କରୁଥିଲି, ଯେ ଜଗଦ୍ବିପେନ୍ଦ୍ରର କ୍ଷମତାକୁ କେମିତି କମ କରାଯାଇ ପାରେ । କଥାବାର୍ତ୍ତା କରି ପ୍ରଣବର ଘରେ ପହଞ୍ଚିଲୁ । ଯାଇ ଦେଖିଲୁ, ଜଗଦ୍ବୀପେନ୍ଦ୍ର, ଗଣେଶଦା', ରତନ ପ୍ରଭୃତି ବସିଛନ୍ତି । ମହେଶ ଥିଲା । ବିଭିନ୍ନ ବିଷୟରେ ଆଲୋଚନା ଚାଲିଲା । ଗଣେଶଦା' ସହ ଯୁକ୍ତିତର୍କ ଆରମ୍ଭ କଲି ।

ତା'ପରେ ସେଠାରୁ କ୍ଲବ ଆଡ଼କୁ ମୁହାଁଇଲୁ । ମହେଶ ଏବଂ ରତନକୁ ବିଦାୟ ଦେଲୁ କାରଣ ସେମାନଙ୍କର ସ୍କୁଲ ଥିଲା । ସାଢ଼େ ଦଶଟା ପର୍ଯ୍ୟନ୍ତ କାମଦାମ କରି ଘରକୁ ଫେରିଲୁ । ଦ୍ୱିପ୍ରହରେ ଶୋଇଲି । ହଠାତ୍ ବାବୁରାମ ମୋତେ ଡାକି ଉଠାଇ ଦେଲା । ମନେ ମନେ ଖୁବ୍ ଖରାପ ଲାଗିଲା । ସେ ବହି ମାଗିଲା । ମୁଁ କହିଲି ଏକଘଣ୍ଟା ପରେ ଦେବି । ମୋତେ ଖୁବ୍ ନିଦ ମାଡୁଛି । ଆଜି ୪ଟାରେ ରବୀନ୍ଦ୍ର ଜୟନ୍ତୀ ସମ୍ବନ୍ଧରେ କ୍ଲବରେ ମିଟିଂ ହେଲା । ମୁଁ ମଧ୍ୟ ଅନେକ କିଛୁ କହିଲି । ଜଗଦ୍ବୀପେନ୍ଦ୍ର ମୋର

କଥାକୁ କିଛି ମୂଲ୍ୟ ଦିଏନାହିଁ । ଆମେ ସନ୍ଧ୍ୟା ସାଢ଼େ ୬ଟାରେ ମୁଁ, ଗୋପାଳ ଏବଂ ପ୍ରଣବ ଗୋପନ ଭାବରେ ଆଲୋଚନା କଲୁ ଯେ, କେଉଁ ବାଟରେ ଜଗଦ୍ଦୀପେନ୍ଦ୍ରର କ୍ଷମତା କମାଯାଇ ପାରେ । ରାମ ନଗିନା ସହିତ ଆଜି ଦେଖାହେଲା । ନଳିନୀ ବାବୁଙ୍କ ସହ କ୍ଲବ ବିଷୟରେ ଆଲୋଚନା କଲୁ ।

॥ ୨୩।୪।୧୯୬୯ : ବୁଧବାର ॥ ଆମମାନଙ୍କ ଭିତରେ ଷଡ଼ଯନ୍ତ୍ର ଚାଲିଛି କେମିତି ଜଗଦ୍ଦୀପେନ୍ଦ୍ର ଏବଂ ଗଣେଶଦାଙ୍କୁ ତାଙ୍କର ପଦରୁ ହଟାଇ ଦିଆଯାଇପାରେ । ସନ୍ଧ୍ୟା ସମୟରେ ଆମେ ଯେତେବେଳେ ବୁଲିବାକୁ ଗଲୁ, ସେତେବେଳେ ପ୍ରଣବ ଏବଂ ଗଣେଶଦାଙ୍କ ଭିତରେ ଖୁବ୍ ଯୁକ୍ତିତର୍କ ହେଲା । ପ୍ରଣବ ଗଣେଶଦାଙ୍କୁ ମୂର୍ଖ, ମୂର୍ଖ ବୋଲି ଯାଚ୍ଛାତା ଗାଳି ଦେଲା ।

॥ ୨୪।୪।୧୯୬୯ : ଗୁରୁବାର ॥ ସକାଳ ସାଢ଼େ ୮ଟାରେ ଘରୁ ବାହାରିକୁ ବୁଲି ବାହାରିଲି ମିଣ୍ଟୁର ଦୋକାନରେ ପ୍ରଣବ ସାଙ୍ଗରେ ଦେଖାହେଲା । କ୍ଲବ ବିଷୟରେ ଆଲୋଚନା ହେଲା । ଗୋବିନ୍ଦ ଏବଂ ସତ୍ୟ ଭଟ୍ଟାଚାର୍ଯ୍ୟ କହିଲେ 'ଆମର କ୍ଲବ ୨।୩ ଦିନ ଭିତରେ ଭାଙ୍ଗିଯିବ' । ପ୍ରଣବ ସହିତ ଗଣେଶଦାର ଯୁକ୍ତିତର୍କ ହେଲା । ଜଗଦ୍ଦୀପେନ୍ଦ୍ରକୁ ପ୍ରଣବର ବିରୁଦ୍ଧରେ କହି ଜାଣିଲି ଯେ, ସେ ଗଣେଶଦାଙ୍କୁ ସମର୍ଥନ କରେ । ଦ୍ୱିପ୍ରହରେ କ୍ଲବରେ କାଗଜ ମାରିଲି । ବାହାରେ କେତେଜଣ ଗୁଣ୍ଡାଟୋକା ଆମକୁ ଧମକ ଦେଲେ ଯେ ସେମାନେ ଆମର କ୍ଲବକୁ ଭାଙ୍ଗି ଦେବେ ।

॥ ୨।୫।୧୯୬୯ : ଶୁକ୍ରବାର ॥ ଆଜିକାଲି ହୀରାଲାଲ କଥା ଯେତେ ବେଶୀ ମନେ ପଡ଼େନା । କାରଣ ବର୍ତ୍ତମାନ ରବୀନ୍ଦ୍ର ଜୟନ୍ତୀର କାମରେ ବ୍ୟସ୍ତ ଅଛି । ତଥାପି ମନେ ମନେ ଭାବେ, ହୀରାଲାଲ ଯଦି ଏଠାରେ ଥାଆନ୍ତା ତା'ହେଲେ କେତେ ବେଶୀ ଆନନ୍ଦ ହୁଅନ୍ତା । ଆମର ରିହର୍ସାଲ୍ ଚାଲିଛି । ପ୍ରୋଜେକ୍ଟ ଅଫିସରେ 'ମୁକ୍ତଧାରା' ନାଟକ ପାଇଁ ।

॥ ୩।୫।୧୯୬୯ : ଶନିବାର ॥ ଆଜି ଆମର ରାଷ୍ଟ୍ରପତି ଜାକିର ହୁସେନଙ୍କର ମୃତ୍ୟୁ ହେଲା । ଆଜି ହୀରାଲାଲକୁ ଗୋଟିଏ ଚିଠି ଲେଖିଲି ଏବଂ ଲେଖିଲି ତୁମେ ଏଠି ନଥିବାରୁ ମୋତେ ବଡ଼ ଅଭାବ ଅଭାବ ଲାଗେ ।

॥ ୪।୫।୧୯୬୯ : ରବିବାର ॥

ମୁଁ କଲୋନୀରେ ଥିବା ଆମର 'ଅଗ୍ରଦୂତ' କ୍ଲବରେ ଜାକିର ହୁସେନଙ୍କ ପାଇଁ ନଅଟା ସମୟରେ ଶୋକସଭା କଲୁ । ଆମର ପ୍ରୋଗ୍ରାମକୁ ପଛେଇ ଦେଇ ୧୬।୧୭ ତାରିଖରେ ହେବ ବୋଲି ସିଦ୍ଧାନ୍ତ କଲୁ ।

॥ ୫।୫।୧୯୬୯ : ସୋମବାର ॥ ରିହର୍ସାଲର ହଟଚମଟ ମଧ୍ୟରେ ଆମ

ମାନଙ୍କର ଦିନସବୁ ଖୁବ୍ ଶୀଘ୍ର ଶୀଘ୍ର ଅତିବାହିତ ହୋଇଗଲା ।

॥ ୬ । ୫ । ୧୯୬୯ ॥ ସବୁଦିନ ଆଜିକାଲି ମୁଁ ପୋଷ୍ଟ ଅଫିସ ଯାଏ ହୀରାଲାଲ ମାଲୁର ଚିଠି ଅପେକ୍ଷାରେ । କିନ୍ତୁ ଚିଠି ଆସେନା । ଏସବୁ କଥା ଭାବି ଭାବି ଦିନ ଯାଏ । ରାତିରେ ଆମର ନାଟକର ରିହର୍ସାଲ୍ ହୁଏ ବ୍ଲକ ଅଫିସରେ । ଆମକୁ ନିର୍ଦ୍ଦେଶନା ଦେଉଥିଲେ, ଗଣେଶ, ପ୍ରୋଜେକ୍ଟରେ ଥିବା ନିହାର କର । ନିହାର ରଞ୍ଜନ କର ଖୁବ୍ ଭଲ ଲୋକ । ଆମେ ତାଙ୍କୁ କରଦା ଡାକୁ ! ଆମ ନାଟକର ବିଭିନ୍ନ ଭୂମିକାରେ ଥିଲେ, ୧- ଗୋପାଳ, ୨- ପ୍ରଣବ, ୩- ବାବୁରାମ, ୪- ଗଣେଶଦା, ୫- ଜଗଦ୍ଦୀପେନ୍ଦ୍ର, ୬- ହରେନ, ୭- ହୀରେନ, ୮- ମହେଶ, ୯- ଅରୁଣ, ୧୦- ଗୋବିନ୍ଦ, ୧୧- ମୁଭାଷ ଇତ୍ୟାଦି । ଆମର ଦିନ ଗୁଡ଼ାକ ଖୁବ୍ ଭଲ ଭାବରେ ଯାଉଛି ।

ଆଜି ଧୁବ୍ରି ଯିବାର ପ୍ରୋଗ୍ରାମ କଲି । ପ୍ରଧାନ କାରଣ ହେଲା, ସିନେମା ଦେଖା, ଜିଲ୍ଲା ପାଠାଗାରକୁ ଯିବା । ରାସ୍ତାରେ କମଲ ସହିତ ଦେଖା ହେଲା । ସେ ଏକମାସ ପୂର୍ବେ ମାଡ୍ରାସ ଯାଇଥିଲା । ଆଜି ସକାଳେ ଗାଡ଼ିରେ ଫେରିଛି । ମୁଁ ସଙ୍ଗପ୍ରିୟ । ଏକୁଟିଆ ଆଦୌ ଭଲ ଲାଗେନା । କିନ୍ତୁ ଆଜି ମୋର ସଙ୍ଗୀ ନାହିଁ । ଆମର ଟ୍ରକରେ ଗଲି । ବି.ଡି.ଓ ନିକଟରେ ଓହ୍ଲାଇଲି । ଯୁଗଲ ଦା' ଠାରୁ ୪ଟଙ୍କା ନେଇ ମୁଁ ଚାଲିଗଲି । ପ୍ରଥମେ ଗଲି କିଷ୍ଟୋ ହୋଟେଲକୁ । ପ୍ରାୟ ଏକମାସ ପରେ କିଷ୍ଟୋ ହୋଟେଲକୁ ଗଲି । ରାମବାବୁ ଏବଂ ଗଣପତି ବାବୁଙ୍କ ସହ ଦେଖା ହେଲା । ହୀରାଲାଲ କଥା ସେମାନେ ପଚାରିଲେ । ଏଠାରୁ ମୁଁ ଲାଇବ୍ରେରୀକୁ ଗଲି । ରାସ୍ତାରେ ଆମର ହେଲ୍‌ପରକୁ କହିଲି ମୁଁ ସିନେମା ଦେଖିବାକୁ ଯିବି । 'ବସନ୍ତ'ରେ ଚାଲିଥିଲା 'ଔଲାଦ' ଏଇଟା ଦେଖିବାକୁ ମନସ୍ଥ କଲି । ପ୍ରଧାନ ଅଭିନେତା ଏବଂ ଅଭିନେତ୍ରୀ ହେଲେ ଜୀତେନ୍ଦ୍ର ଏବଂ ବବିତା । ଜିଲ୍ଲା ଲାଇବ୍ରେରୀରୁ ଆଣିଲି ଦୁଇଟି ବହି— "ଶ୍ରୀକାନ୍ତ" ଓ "ଦେବତାତ୍ମା ହିମାଳୟ" ଚୌକିଦାର ଚା' ଖାଇବା ପଇସା ମାଗିଲା । ୫୦ ପଇସା ଦେଲି । ତା'ପରେ ଯୋଗମାୟା ଆଶ୍ରମକୁ ଗଲି । ମା'ଙ୍କର ସହିତ ଦେଖା କଲି । ଅରୁଣ ସହିତ ମଧ୍ୟ ଦେଖା ହେଲା । ମା ପ୍ରଣବ ବିଷୟରେ ଖରାପ କରି କହିଲେ ଏବଂ ଅରୁଣ ବିଷୟରେ ଭଲ ବୋଲି କହିଲେ । ମା' ଠାରୁ ମନ୍ତ୍ର ନେବି ବୋଲି ଚାହିଁଲି । ମା' କହିଲେ, 'ଦିନେ ସକାଳେ ଆସ' । ମଠର ଟିଚର ସୁଭାଷ ସହିତ ଦେଖାହେଲା ଏବଂ ପି.ୟୁ.ର ୪।୫ ଜଣ ପିଲାମାନଙ୍କ ସହିତ ଦେଖାହେଲା । ବାଦଲ (ରାୟ) ସାଥିରେ ଦେଖାହେଲା । ମଠରରେ କୋଇଲି ଆସୁ ଆସୁ କରିଥିଲା ବାଜିଲା । ତା'ପରେ ଗୌରୀପୁରରେ ଆମ

ଯୁଗଲଦା'ର ଶ୍ୱଶୁର ଘରକୁ ଗଲୁ ।

॥ ୧୨।୫।୧୯୬୯ : ସୋମବାର ॥ ଆଜ ସ୍ୱାଗଲଲ ଆସିଲ । ତାକୁ ଗୋଟିଏ ମାସ ପରେ ଦେଖି ଆନନ୍ଦରେ ମୋର ମନର ଅବସ୍ଥା ଯେ କ ରୂପ ହେଲା ତାକୁ ବୁଝାଇ କହିବା କଠିନ । ଦଶଟା ପରେ ଚନ୍ଦା ସଂଗ୍ରହ କରିବା ପାଇଁ ବାହାରିଲୁ ରବୀନ୍ଦ୍ର ଜୟନ୍ତୀ ପାଇଁ । ଆଜ ଶହରସାଲକୁ ସ୍ୱାଗଲଲ ଗଲା । ଆଜ ମନରେ ଖୁବ୍ ଆନନ୍ଦ ସ୍ୱାଗଲଲ ପାଇଁ ।

॥ ୧୫।୫।୧୯୬୯ : ଗୁରୁବାର ॥ କାଲି ଆମର ରବୀନ୍ଦ୍ର ଜୟନ୍ତୀ ଉତ୍ସବ ହେବ । ସକାଳ ଠାରୁ ଷ୍ଟେଜ ବନ୍ଧା ବନ୍ଧ ଆରମ୍ଭ କଲୁ । ସ୍ୱାଗଲଲ ମୋ ସାଙ୍ଗରେ ଥିଲା । ଖୁବ୍ ହଇଚଇ ଭିତରେ ଖୁବ୍ ଭଲ ଭାବରେ ଦିନଟା ଗଲା ।

॥ ୧୬।୫।୧୯୬୯ : ଶୁକ୍ରବାର ॥ ସକାଳ ୮ଟାରୁ କାମରେ ଲାଗିଗଲୁ । ଆମ ଉତ୍ସବକୁ ଧୁବୁରି ଓ ଗୌରିପୁରରୁ କଳାକାରମାନେ ଆସିଲେ । ଟଙ୍କାର ଅଭାବ ହେଲା । ସେତେବେଳେ ଜଗଦ୍ୱୀପେନ୍ଦ୍ର ମୋ ନାଆଁରେ ୨୦ ଟଙ୍କାର ମିଠା ଏବଂ ପେଟ୍ରୋଲ ଏବଂ ସ୍ୱାଗଲଲ ନାଆଁରେ ୧୧ ଟଙ୍କାର ମିଠା ନେଇ ଆସିଲା । ସବୁର ଭଲ ଭାବରେ ବ୍ୟବସ୍ଥା କରି ପାରିଲୁ ନାହିଁ । ସେଥିପାଇଁ ବହୁତ ଲୋକଙ୍କ ଠାରୁ ବହୁତ କଥା ଶୁଣିବାକୁ ପଡ଼ିଲା । ରାତି ସାଢ଼େ ୧୨ଟାରେ ଆମେ ଘରକୁ ଫେରିଲୁ ।

॥ ୧୭ ମେ' ୧୯୬୯ : ଶନିବାର ॥ ଆଜ ଉତ୍ସବର ଦ୍ୱିତୀୟ ଦିନ । ଆମ ନାଟକ ପାଇଁ ଗଣେଶଦା' ଦାୟିତ୍ୱ ନେଇଥିଲେ । କିନ୍ତୁ ଠିକ୍ ସମୟରେ ଡ୍ରେସ ଯୋଗାଡ଼ କରି ପାରିଲେ ନାହିଁ ।

ଈଶ୍ୱର ଆମର ସହାୟ । ଆଜ ଆମର ନାଟକ ହେବାର କଥା । କିନ୍ତୁ ଡ୍ରେସ ଯୋଗାଡ଼ କରିପାରିଲୁ ନାହିଁ । ଆଜ ସନ୍ଧ୍ୟାଠାରୁ ପାଗ ମେଘୁଆ ଲାଗୁଛି । ଆମେ ଲୋକମାନଙ୍କୁ କହିଲୁ ପାଗ ଭଲ ନାହିଁ ବୋଲି ନାଟକ ବାତିଲ କଲୁ ।

॥ ୧୮ ମେ' ୧୯୬୯ : ରବିବାର ॥ ଆମେ 'ଅଗ୍ରଦୂତ' ସଦସ୍ୟମାନେ ପୋଳେଙ୍କର ଗାଁରେ ଡ୍ରେସ ଆଣିବାକୁ ବାହାରିଆ ଗଲେ । କିନ୍ତୁ କିଛି ପୋଷାକ ପାଇଲେ ନାହିଁ । ସେଥିପାଇଁ ପୋଷାକ ଡେବଡେବରୁ ଆଣିବାର କଥା ଥିଲା ।

୩— ପୋଷାକ ପଫା + ଇସ୍ତ୍ରୀ କରା
୪— ଦ୍ୱିପ୍ରହରରେ ମିଲକୁ ଯିବା + ବ୍ୟାୟାମ କରିବା
୫— ବାବୁରାମ ସହ ଦେଖାକରିବା

ଆଜି ଅନୁକୂଳ ଠାକୁରଙ୍କର ଶିଷ୍ୟ ଏବଂ ନାତି ତାଙ୍କର ଭସ୍ମ ନେଇ ଆସିଥିଲେ । ଆମେ ଦର୍ଶନ କଲୁ ।

|| ୧୭ ମେ' ୧୯୬୯ : ମଙ୍ଗଳବାର ||

ଆଜି ଆମର ଜୋଇଁ ଆସିଛନ୍ତି । ଆଜି ତାଙ୍କର ଆଦର ସତ୍କାରରେ ବ୍ୟସ୍ତ ଅଛୁ । ଯେ ୫ ବର୍ଷ ପରେ ଆସିଛନ୍ତି, ସେଥିପାଇଁ ତାଙ୍କର ବେଶୀ ସମ୍ମାନ କରାହେଉଛି ।

ସାଢ଼େ ୪ଟା ବେଳେ ହୀରାଲାଲ ଆସିଲା । ସେ ଗଲା ବନ୍ଧ ମାଡିଲା । ମୁଁ ତାକୁ 'ଶ୍ରୀକାନ୍ତ' ଦେଲି । ତାକୁ କହିଲି, "ତୁ ଆଜିକାଲି ଖୁବ୍ ବଡ଼ଲୋକ ହୋଇଯାଇଛୁ" । ହୀରାଲାଲକୁ କରବାବୁଙ୍କ ... କୁ ନିବାକୁ କହିଲି । ସେ ମନା କଲା । ମୁଁ ତାକୁ ଭଲପାଏ ବୋଲି ଏତେ ଖୋସାମଦ କରେ ।

ପ୍ରଣବକୁ ନେଇ କରବାବୁଙ୍କ ପାଖକୁ ଗଲି । କିନ୍ତୁ ଶୀଘ୍ର ଶୀଘ୍ର ଫେରି ଆସିଲି ।

ବାଳୁ (ଭଉଣିଆ) ଏବଂ କାଶୀ (ଭଉଣିଆଙ୍କୁ ନେଇ ପୋଲ ଆଡ଼କୁ ବୁଲିବାକୁ ଗଲି ।

|| ୧୮ ମେ' ୧୯୬୯ : ବୁଧବାର ||

ଆଜି ଜୋଇଁ ପୁଅଙ୍କୁ ନେଇ ଧୁବୁରି ଗଲୁ । 'ରାଜ ଔର ରଙ୍କ' ସିନେମା ଦେଖିଲୁ ।

ଏଇ ସବୁ ଧୂଇଧନ ହେଲା କ୍ଲବ୍, ଫ୍ଲବ୍, ବନ୍ଧୁ, ବାନ୍ଧବ କାହାର ସାଙ୍ଗେ ସମ୍ପର୍କ ନାହିଁ । ମୁଁ ବନ୍ଧୁବାନ୍ଧବଙ୍କୁ ଛାଡ଼ି ରହିପାରେନା । ଖୁବ୍ ଖରାପ ଲାଗେ ।

|| ୧୯ ମେ' ୧୯୬୯ : ଗୁରୁବାର ||

ଆଜି ଜୋଇଁବାବୁଙ୍କର ବିଦାୟ ଦିନ । ଗାଡ଼ି ଏଠାରୁ ଯାଏ ୭।୧୫ ମି.ରେ, କିନ୍ତୁ ମୁହୂର୍ତ୍ତ ୪ଟା ପରେ ନାହିଁ । ସେଥିପାଇଁ ଜୋଇଁବାବୁଙ୍କୁ ୪ଟା ସମୟରେ ବିଦାୟ ଦିଆହେଲା ।

ମୁଁ ଆଗେ ଯାଇ ପ୍ରତୀକ୍ଷାଳୟ ଖୋଲିଦେଇ ଆସିଲି । ଜୋଇଁବାବୁଙ୍କ ସହିତ ଅନେକ କଥାବାର୍ତ୍ତା ହେଲା । ଜୋଇଁବାବୁଙ୍କ ସହିତ ଯେଉଁମାନେ ଆସିଥିଲେ, ସେମାନଙ୍କର ଭିତରୁ ଓଁକାର ମଲ, କାଶୀରାମ ପ୍ରଭୃତିଙ୍କ ସହିତ ମୋର ବନ୍ଧୁତା ହେଲା । ଓଙ୍କାର ମାଟ୍ରିକ ପରୀକ୍ଷା ଦେଇଛି ।

॥ ୩୦ ମେ' ୧୯୬୯ : ଶୁକ୍ରବାର ॥

ସକାଳେ ୯।୧୫ରେ ମାହାର କରଙ୍କ ପାଖକୁ ପ୍ରଣବକୁ ସାଥିରେ ନେଇ ଗଲି । ଅନେକ ଆଲାପ ଆଲୋଚନା ହେଲା । ୫ଟା ବେଳେ ହୀରାଲାଲ ସହିତ ଦେଖାକରିବାକୁ ଗଲି । ପାସ କରିବା ପରେ କେଉଁଠି ପଢ଼ିବ ତାକୁ ପଚାରିଲି । ସେ ଫଳ ବାହାରିବା ପୂର୍ବରୁ କିଛି କହିବାକୁ ଇଚ୍ଛା କଲାନାହିଁ । ମୁଁ କହିଲି ତୁ ଆଉ ମୁଁ ଯୋଉଠି ପଢ଼ିଲେ ବି ଗୋଟିଏ ଯାଗାରେ ପଢ଼ିବା । ଭଲିଆ ଠାରୁ ଗୋଟିଏ ଗୋଟିଏ ବହି ଆଣିଲୁ ।

ଖାଇ ପିଇ ୭ଟାରେ କରବାବୁଙ୍କ ପାଖକୁ ଗଲି ବାବୁରାମର ସହିତ । ଜଗଦ୍ବିପେନ୍ଦ୍ର ସହିତ କଥାରେ କଥାରେ ଝଗଡ଼ା ଲାଗିଲା ଏବଂ ତାହା ତୁମୁଳ ଆକାର ଧାରଣ କଲା ।

॥ ୩୧ ମେ' ୧୯୬୯ : ଶନିବାର ॥

ଜଗଦ୍ବିପେନ୍ଦ୍ରକୁ ହଟେଇ ଦେବା ବିଷୟରେ ଆଲୋଚନା ହେଲା ।

॥ ୧ ଜୁନ ୧୯୬୯ : ରବିବାର ॥

ହୀରାଲାଲ ମୋତେ ଅବହେଳା କରୁଛି । ମୁଁ ତାର ଅପେକ୍ଷାରେ ଘରୁ ବାହାରେକୁ ଯାଉଛି । ପ୍ରଣବର ଘରକୁ ଯାଉନି । କିନ୍ତୁ ତଥାପି ହୀରାଲାଲର ଦେଖା ପାଉନି । ହୀରାଲାଲକୁ ମୁଁ ପ୍ରାଣରେ ହିତ ଭଲ ପାଏ, କିନ୍ତୁ ସେ ମୋତେ ଭଲ ପାଏ କି ପାଏନା ମୁଁ କହିପାରିବିନି । ମୋର ଅନ୍ତରରେ ବର୍ତ୍ତମାନ କାହାଠାରୁ ପ୍ରତି ଭଲପାଇବା ନାହିଁ କେବଳ ହୀରାଲାଲକୁ ବାଦ୍ ଦେଇ । ତା ସହିତ ଦେଖା କରିବାକୁ ତାର ଘରକୁ ଯିବା ପାଇଁ ଇଚ୍ଛା ହୁଏ ।

॥ ୨ ଜୁନ ୧୯୬୯ : ସୋମବାର ॥

ସବୁ ସମୟରେ ହୀରାଲାଲ ବିଷୟରେ ଭାବେ । ହୀରାଲାଲର କଥା ଭାବେ । ତା ଘରକୁ ଯିବାପାଇଁ ଇଚ୍ଛା ହୁଏ । କଣ କରିବି ଭାବି ପାରୁନି । ସବୁକିଛି ପାଇ ବି କିଛି ବି ପାଇନି । ମୋର ଅନ୍ତରର ଦୁଃଖ କିଏ ବୁଝିବ । ହୁଏତ ମୁଁ ଯେଉଁ କାରଣ ପାଇଁ ତାର ଘରକୁ ଯାଏ ସେ ବୋଧହୁଏ ସେଇଥିପାଇଁ ଆମ ଘରକୁ ଆସେନା । କେଜାଣେ ସେ ମୋତେ ଭଲ ପାଏ କି ନା ମୁଁ କେମିତି ଜାଣିବି ?

॥ ୩ ଜୁଲାଇ ୧୯୬୯ : ମଙ୍ଗଳବାର ॥

ପ୍ରାୟ ମାସେ ହେବ, ଡାଏରୀ ଲେଖି ନଥିଲି । ଆଜି ହି.ସ୍କୁ. ପରୀକ୍ଷାର ଫଳ ବାହାରିବାର ଥିଲା, କିନ୍ତୁ ବାହାର ନାହିଁ ।

॥ ୪ ଜୁଲାଇ ୧୯୬୯ : ବୁଧବାର ॥

ଆଜି ସକାଳେ କରଦା'ଙ୍କ ପାଖକୁ ଗଲି । ତାଙ୍କ ଦ୍ଵାରା ସମ୍ପାଦିତ କିଛି ପତ୍ରିକା ସଂଶୋଧନ କଲି ଏବଂ ୫ଟା ଖଣ୍ଡେ ପତ୍ରିକା ସଂଶୋଧନ କରିବାକୁ ଘରକୁ ନେଇ ଆସିଲି ।

ଆଜି ଫଳ ବାହାରିବାର କଥା । ହୀରାଲାଲ ସହିତ ଦେଖା ହେଲାନାହିଁ । ତା ଉପରେ ଅଭିମାନ । କିନ୍ତୁ ମୁଁ ତ ତା ଘରକୁ ଯାଇପାରେ !

|| ୫ ଜୁଲାଇ ୧୯୬୯ : ଗୁରୁବାର ||

ଏଇ ଉପର ବାଦଲ ଲାଇନ ଦେଖି ମନେପଡ଼ିଲା ଯେ ଆଜି ବାଦଲ ସହିତ ଦେଖା କରିବାର ଥିଲା । କିନ୍ତୁ ମୁଁ ଭୁଲି ଯାଇଛି ।

ଆଜି ସକାଳେ ମିଲ୍‌କୁ ଗଲି । କିନ୍ତୁ କାମ ଶିଖିବା ପାଇଁ । ତାଛଡ଼ା ପ୍ରଣବ ପ୍ରତ୍ୟେକ ଦିନ ସକାଳେ ଆମ ଘରକୁ ଆସେ, ଏଇଟା ମୋତେ ଭଲ ଲାଗେନା । ୮ଟାରୁ ୯ଟା ପର୍ଯ୍ୟନ୍ତ ମିଲ୍‌ରେ ଥିଲି । ତାପରେ ସାଇକେଲ ନେଇ ଘରକୁ ଆସିଲି । ରାସ୍ତାରେ ସୁଧୀର ଡାକ୍ତରଙ୍କର ପୁଅ ବୃଜେନ ସହିତ ଦେଖାହେଲା । ଧୋବା ନିକଟକୁ ଗଲି । ଲୁଗା ୧ଟା ସନ୍ଧ୍ୟା ସମୟରେ ଦେବାକୁ କହିଲି । କର ଦାଙ୍କ ଘରକୁ ରଡନ ଦେ ସହିତ ଗଲି । ହୀରାଲାଲ ସହିତ ଦେଖା ହେଲାନାହିଁ । ଫଳ ଆଜି କାଲି ବାହାରିବ । କରବାବୁଙ୍କ ଘରେ ଗୋପାଳ ଏବଂ ପ୍ରଣବ ସହିତ ଦେଖା ହେଲା । ଆଜିର ଖବର କାଗଜ ପୁରା ପଢ଼ିଛି । ବର୍ତ୍ତମାନ ୯ଟା ବାଜିବାକୁ ୧୦ ମିନିଟ୍ କମ । ମୁଁ ଡାଏରୀ ଲେଖୁଛି ।

|| ୬ ଜୁଲାଇ ୧୯୬୯ : ଶୁକ୍ରବାର ||

ଆଜିର ପ୍ରୋଗ୍ରାମ

୭|୩୦ରୁ ୯ଟା ପର୍ଯ୍ୟନ୍ତ — ମିଲ୍

୯ଟାରୁ ୧୦ଟା — ପ୍ରଣବ, ବାବୁରାମ, ଧୋବ, ଗୋପାଳ ।

|| ୭ ଜୁଲାଇ ୧୯୬୯ : ଶନିବାର ||

ହୀରାଲାଲ ସହିତ ଦେଖାହୁଏନା । ଫଳ ବାହାରିବାର କଥା କିନ୍ତୁ ବାହାରି ନାହିଁ । ଆଜି ହୀରାଲାଲ ପାଖରୁ 'ଶ୍ରୀକାନ୍ତ' ଆଣିବାକୁ ଗଲି । କିନ୍ତୁ ଦେଖା ହୋଇଲା ନାହିଁ । ସେ ଧୂଳିପୁର ଯାଇଥିଲା ସିନେମା ଦେଖିବାକୁ ପରୀକ୍ଷାଫଳ ଆଣିବାର ବାହାନା କରି ।

ମୁଁ, ପ୍ରଣବ ଏବଂ ଗୋପାଳ କରବାବୁଙ୍କ ଘରକୁ ଗଲୁ ସନ୍ଧ୍ୟା ସମୟରେ । କରବାବୁଙ୍କ ପାଖରୁ ଆସିବା ପରେ ଆମେ ମୋଡ଼ ଦୋକାନ ପାଖରେ ଠିଆ ହୋଇଥିଲୁ । ହୀରାଲାଲ ସହିତ ଦେଖାହେଲା । ମିଟିଙ୍ଗ୍ ପାଇଁ ଦସ୍ତଖତ ନିଆହେଲା ।

|| ୮ ଜୁଲାଇ ୧୯୬୯ : ରବିବାର ||

ସକାଳର ଆଞ୍ଚଳିକ ସମ୍ବାଦ ଶୁଣିଲି । କିନ୍ତୁ ପରୀକ୍ଷାଫଳ ବାହାରିଲା ନାହିଁ ।

॥ ୯ ଜୁଲାଇ ୬୯ : ସୋମବାର ॥

ଲାଲୁଘୋଷ, ଭୁବନ, ବାଦଲ, ଝଣ୍ଟନ । ସକାଳେ ବାବୁରାମ ଆମ ଘରକୁ ଆସିଲା ଡ୍ରେସ୍‌ରିହର୍ସାଲରେ ପୋଷାକ ସବୁ ଫେରାଇ ଦେଇ ଆସିବାପାଇଁ । ମୁଁ ଗଲିନାହିଁ । ମୋ ଉପରେ ବାବୁରାମ ରାଗିଲା ।

ଦ୍ୱିପ୍ରହରରେ ଉପେନ ଆସିଲା । ପରୀକ୍ଷାଫଳ ପାଇଁ ଅପର୍ଣ୍ଣା ହାଲଦାରଙ୍କ ଘରକୁ ଗଲୁ । ଚା ଦେଲା । ଖାଇଲୁ । ପରୀକ୍ଷାଫଳ କେବେ ବାହାରିବ, ସେ ବିଷୟରେ କଥାବାର୍ତ୍ତା କଲୁ । ୩ଟା ବେଳେ ପ୍ରଣବ ଆସିଲା । ଚା ଖାଇ ୪ଟା ବେଳେ କାନାଇ ଦୋକାନକୁ ଗଲୁ । ସେଠାରେ ମନେ ମନେ ଭାବିଲି ପ୍ରଣବ କେମିତି ଚାଲିଯାଉ, ତାହେଲେ ମୁଁ ହୀରାଲାଲ ଜଙ୍କଙ୍କୁ ଯାଇପାରିବି । ପ୍ରଣବ ମୋତେ କହିଲା ବାବୁରାମ ଘରକୁ ଯିବାପାଇଁ । ମୁଁ କହିଲି ମୁଁ ଯିବିନାହିଁ । ସେ ମୋତେ ବୁଲିବାକୁ ଯିବାପାଇଁ କହିଲା । ମୁଁ କହିଲି, ନା ଯିବିନାହିଁ । ପ୍ରଣବ ରାଗି ଚାଲିଗଲା ।

ମୁଁ ହୀରାଲାଲ ଘରକୁ ଗଲି । ଅନେକ ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା ହେଲା । ତାଲୁଆ ଠାରୁ ବହି ଆଣିଲି ।

ସାଢ଼େ ୬ଟାରେ ଜୀବନ ଦୋକାନରେ ଆମେ (ଗୋପାଳ, ରତନ ଦେ, ଜଗଦ୍ୱିପେନ୍ଦ୍ର-ବର୍ତ୍ତମାନ ତା' ବନ୍ଧୁତା ହୋଇଛି- ରତନ ସାହା, ବିମଳ ଦେ, ସୁଶାନ୍ତ) ଥିଲୁ । ଘରକୁ ଫେରୁ ଫେରୁ ସାଢେ ୭ଟା ହେଲା ।

॥ ୧୦ ଜୁଲାଇ ୧୯୬୯ : ମଙ୍ଗଳବାର ॥

ଆଜି ବୁଢ଼ା ଲୋକମାନଙ୍କ କେମିତି ପଢ଼ା ହେବ, ସେ ବିଷୟରେ ଟ୍ରେନିଂ ନେଲି, କିନ୍ତୁ ବର୍ଷା ଯୋଗୁ ହୋଇନାହିଁ ।

ସନ୍ଧ୍ୟା ସମୟରେ ହୀରାଲାଲ ଆସିଲା । ବାବୁରାମ 'ଅନୁରାଧା' ବହି ନେଇଗଲା । ସାଢ଼େ ୫ଟାରେ ଜିଲ୍ଲା ଅଫିସକୁ ଦଳବାନ୍ଧି ଗଲୁ ଏବଂ କ୍ଲବପାଇଁ ସାହାଯ୍ୟ ଚାହିଁଲୁ ।

॥ ୧୨ ଜୁଲାଇ ୧୯୬୯ : ଗୁରୁବାର ॥

ଆଜି ୧୧ଟାରେ କ୍ଲବ୍‌କୁ ଗଲି ବୟସ୍କ ଶିକ୍ଷାର ଟ୍ରେନିଂ ନେବାପାଇଁ । ଆଜି ଆମର ଉଦ୍‌ଘାଟନ । ସେଠାରେ ବାବୁରାମ ପାଖରୁ ଶୁଣିଲି ଯେ କୃଷ୍ଣକାନ୍ତ ଶର୍ମା (ଯେ ମୋତେ ସ୍ନାୟୁ ରୋଗ ପାଇଁ ଔଷଧ ଦେଇଥିଲେ) ଯେ କାଲି ୧୨୮ ମିନିଟରେ 'ଟ୍ରେନ୍'ରେ ମରିଛନ୍ତି । ଶୁଣି ଖୁବ୍ ଦୁଃଖ ହେଲା । ତାଙ୍କପାଇଁ ମୋର ସେ ରୋଗଟା ଯାଇଛି । ବର୍ଷା ଯୋଗୁ ସନ୍ଧ୍ୟା ସମୟରେ ବୁଲିବାକୁ ନଯାଇ 'ଯୌତୁକ' ଧରି ବସିଲି ।

॥ ୧୩ ଜୁଲାଇ ୧୯୬୯ : ଶୁକ୍ରବାର ॥

୧୨ଟା ବେଳେ ବାପା କହିଲେ, ତୋତେ ଗୌରୀପୁର ଯିବାକୁ ହେବ ନୂଆ

ବୋଉଙ୍କୁ ସେଠି ପହଞ୍ଚାଇ ଦେବାପାଇଁ । ୩ଟା ବେଳେ ଗୌରୀପୁରରେ ପହଞ୍ଚିଲି । ଗୌରୀପୁରରୁ ଧୁବୁରି ଗଲି ଚପଲ କିଣିବାକୁ । ଅଜି ମାଲଗାଡ଼ିର ଦୁର୍ଘଟଣା ଯୋଗୁ ଗାଡ଼ି ଖୁବ୍ ଲେଟ୍ ଥିଲା । ଗୋବିନ୍ଦ ପାଖକୁ ଗଲି ।

ସିଟି ବସ୍‌ରେ ଗୌରୀପୁର ଯାଇ ନନ୍ଦଲାଲ ବାବୁଙ୍କ ଘରକୁ ଯାଇ ଖାଇ ପିଇ ଶୋଇ ପଡ଼ିଲି ।

॥ ୧୪.୭.୬୯ : ଶନିବାର ॥

୮ଟା ବେଳେ ଗୌରୀପୁରରୁ ଆସିଲି । ଧୁବୁରି ଗଲି । ସ୍କଲାର୍ସିପ୍ ଟଙ୍କା ପାଇବାର କଥା, କିନ୍ତୁ ପାଇଲି ନାହିଁ । କମଲ ସହିତ ସିନେମା ଦେଖିଲି, "କାହିଁ ଦିନ୍ କାହିଁ ରାତ" ପରୀକ୍ଷାଫଳ ବିଷୟରେ ପଚାରି ବୁଝିଲି ଯେ କାଲି ମିଳିବ ।

ସାଢ଼େ ସାତଟାରେ ଗୋଲକଗଞ୍ଜରେ ହିରାଲାଲ ସହିତ ଦେଖାହେଲା । ପଢ଼ା ପଡ଼ି କଥା ପଡ଼ିଲାରୁ ସେ କହିଲା ଯେ ତୁମେ ଯେଉଁଠି ତୁମର ଇଚ୍ଛା ପଢିପାର, କିନ୍ତୁ ସେ ଧୁବୁରିରେ ପଢିବ । ମୋତେ ଏକଥାରେ ଆଘାତ ଲାଗିଲା ।

॥୧୫.୭.୬୯ : ରବିବାର ॥

୪ଟା ବେଳେ ବୁଲିବାକୁ ବାହାରିଲି । ପ୍ରଣବ ଏବଂ ଗୋବିନ୍ଦ ସହିତ ପରୀକ୍ଷାଫଳ ବିଷୟରେ ଆଲୋଚନା ହେଲା ଯେ, ତାହା କେବେ ବାହାରିବ ।

ମହେଶ ସହିତ ଯୁକ୍ତିତର୍କ ଏବଂ ମନ ମାଳିନ୍ୟ ହେଲା । ତାକୁ ମୁଁ 'ସମାଜ ସେବୀ' ଉପାଧି ଦେଲି । ଆଜି ସନ୍ଧ୍ୟାରେ ରେଜାଲ୍‌ଟର ଖବର ଶୁଣିଲି । ତାପରେ ସୁଶାନ୍ତକୁ ପଚାରିବାରୁ ସେ କହିଲା ରେଜାଲ୍ଟ ବାହାରିନାହିଁ ।

ମୁଁ ତୃତୀୟ ଶ୍ରେଣୀରେ ପାସ କଲି । ଗୋବିନ୍ଦ ଏବଂ ପ୍ରଣବ ପାସ୍ କଲେ ସେଇ ଶ୍ରେଣୀରେ, କିନ୍ତୁ ହିରାଲାଲ ଫେଲ୍ ହେଲା । ମୋ ଛଡ଼ା ଗୋଲକଗଞ୍ଜରେ ସବୁ ସମସ୍ତେ ଫେଲ୍ ହୁଅନ୍ତି କିନ୍ତୁ ହିରାଲାଲ ପାସକରେ ତା ହେଲେ ମୁଁ ଖୁବ୍ ଖୁସି ହୋଇଥାନ୍ତି । ଏହା ସତ୍ୟ ଯେ ମୁଁ ଖୁବ୍ ଆଘାତ ପାଇଛି ଏବଂ ଦୁଃଖିତ ହୋଇଛି । ମୁଁ ଅନେକ ଯୋଜନା କରିଥିଲି, ସେ ଏବଂ ମୁଁ ଏକସଙ୍ଗେ ଗୌହାଟୀରେ ଭର୍ତ୍ତି ହେବୁ । କିନ୍ତୁ ସବୁ ଗଲା ।

॥ ୧୬.୭.୬୯ : ସୋମବାର ॥

ସକାଳେ ହିରାଲାଲ ଆସିଲା । ପତ୍ରିକାରେ ଦେଖିଲି ଯେ ତାର ରୋଲ୍ ନମ୍ବର ନାହିଁ । ମୋର, ପ୍ରଣବ, ଗୋବିନ୍ଦ, ରାମନାରାୟଣ, ଉପେନ, ଗିରିଧର ଆଦିର ଅଛି । କିନ୍ତୁ ସମସ୍ତେ ତୃତୀୟ ଶ୍ରେଣୀରେ ପାସ କରିଛନ୍ତି । ଅଛା, ତାମସା, ଫୁର୍ତ୍ତି ଏବଂ ଦୁଃଖର ଭିତରେ (ହିରାଲାଲ ପାଇଁ) ମୁଁ ଗତି କରୁଛି ।

|| ୧୭.୭.୭୯ : ମଙ୍ଗଳବାର ||

ମୁଁ ପାସ କଲେ ବି ହୀରାଲାଲ ପାସ କରିନାହିଁ ବୋଲି ଭଲ ଲାଗେନା ।

ଆଜି କାଲି ରେଜାଲ୍ଟ ବାହାରିଲା ପରେ ହୀରାଲାଲ ଘରୁ ବେଶୀ ବାହାରକୁ ଆସେନା । ଶରୀର ବେଶୀ ଭଲ ଲାଗେନି । ଧର୍ମ ଆଡ଼କୁ ଆଜିକାଲି ବେଶୀ ଝୁଙ୍କ ନାହିଁ । କଣ କରିବି ଏବଂ କଣ ନକରିବି । ମନରେ ଶାନ୍ତି ନାହିଁ । ପ୍ରଣବ, ଗୋପାଳ ହେଉଛନ୍ତି ଆସନ୍ତି, କିନ୍ତୁ ହୀରାଲାଲ ଛଡ଼ା ସେମାନେ ମୋତେ ଭଲ ଲାଗନ୍ତିନି ।

|| ୧୯ ଜୁଲାଇ ୭୯ : ଗୁରୁବାର ||

ସକାଳେ ଗଡ଼ରେ ବସିଥିଲି । ଦେଖିଲି ହୀରାଲାଲ ରାସ୍ତାରେ ଯାଉଛି । ସେ ଧୁବୁଲି ଯାଇଥିଲା । ମୁଁ କହିଲି ମାର୍କସିଟ୍ ନେଇଆସ । ସେ କହିଲା ମୁଁ ସମସ୍ତ ପାଇଲେ ଚେଷ୍ଟା କରିବି ।

ମୁଁ ଏବଂ ପ୍ରଣବ ସନ୍ଧ୍ୟାରେ କରବାବୁଙ୍କ ପାଖକୁ ଗଲୁ କର୍ମନ୍ଦିରରେ । (ହୀରାଲାଲ ଆସିବାର ଚିନ୍ତା ନାହିଁ) । କରବାବୁଙ୍କ ସହିତ ଅନେକ କଥାବାର୍ତ୍ତା ହେଲା । ଘରକୁ ଫେରିଲି ୭ଟା ବେଳେ ।

|| ୨୦ ଜୁଲାଇ ୭୯ : ଶୁକ୍ରବାର ||

ସକାଳେ ହୀରାଲାଲ ପାଖକୁ ଯାଇ ମାର୍କସିଟ ବିଷୟରେ ପଚାରିଲି । ସେ କହିଲା ଶନିବାର ଦିନ ମିଳିବ । ମୁଁ ପଚାରିଲି ତୁ ଫିରୁ ନା ନାହିଁ ? ସେ କହିଲା ନା । ଅପରାହ୍ନ ସାଢ଼େ ୪ଟାରେ କରବାଙ୍କ ପାଖକୁ ଗଲି ପ୍ରଣବ ଏବଂ ମାର୍କଣ୍ଡିଲାଲ ସହିତ । ଆମ୍ବ ଖାଇବାକୁ ଦେଲେ । ଆମେ ତାଙ୍କୁ ଶାନ୍ତିନିକେତନରେ ମୋର ସିଟ୍ ପାଇଁ ଚିଠି ଲେଖିବା ପାଇଁ କହିଲି ।

|| ୨୧ ଜୁଲାଇ ୭୯ : ଶନିବାର ||

ଆଜି ମାଟ୍ରିକ ପରୀକ୍ଷାଫଳ ବାହାରିଛି । ମୋର ଅନ୍ତରଙ୍ଗ ବନ୍ଧୁ ଦୁଇଜଣ ଦାବୁରାମ ଏବଂ ଗୋପାଳ ଫେଲ୍ ହୋଇଛନ୍ତି । ଉପରେ ଉପରେ ଖୁବ୍ ଦୁଃଖ ପ୍ରକାଶ କଲି । କିନ୍ତୁ ଆନ୍ତରିକ ଭାବେ କିଛି ଦୁଃଖ ଅନୁଭବ କରିନି । କାହିଁକି ? ମୁଁ ଜାଣିନି । ବୋଧହୁଏ କାରଣଟା ଏମିତି ଯେ ସେମାନେ ତଳେ ରହିଲେ ମୋର ସମ୍ମାନ ବଜାୟ ରହିବ । ମନୁଷ୍ୟର ମନ କେତେ ବିଷମ ଏବଂ କେତେ କପଟତାପୂର୍ଣ୍ଣ !

ଭାଟରେ ସ୍କୁଲରୁ ପାସ କରିଛନ୍ତି ପ୍ରଥମ ଶ୍ରେଣୀରେ— ଆନନ୍ଦମୟ, ସୁଧୀର ମଣ୍ଡଳ । ଦ୍ୱିତୀୟ ଶ୍ରେଣୀରେ— ଜଗଦ୍ବିନ୍ଦ୍ର, ବରଦା, ଚନ୍ଦ୍ରଲେଖା ଇତ୍ୟାଦି । ନନ୍ଦଲାଲ ସେକେଣ୍ଡ ଡ଼ିଭିଜନ ନେଇ ପାସ କରିଛି ।

ଗୋବିନ୍ଦକୁ ନାମଲେଖା ତାରିଖ ବିଷୟରେ ପଚାରିଲି । ରାତରେ ହୀରାଲାଲ

ସହିତ ଦେଖାହେଲା । ମୋର ଅନ୍ତର ଆନନ୍ଦରେ ଭରି ଉଠିଲା, ବର୍ଣ୍ଣନା କରି ହୁଏନା । ପଚାରିଲି କେଉଁଠି ପଢ଼ିବ । ସେ କହିଲା ପ୍ରାଇଭେଟ ପରୀକ୍ଷାର୍ଥୀଭାବେ ପରୀକ୍ଷା ଦେବ । ଏବଂ ବହୁତ କଥାବାର୍ତ୍ତା ହେଲା । ସାଢ଼େ ନ'ଟାରେ ଘରକୁ ଆସିଲି ।

|| ୧୨.୭.୬୯ : ରବିବାର ||

ଯେଉଁ 'ଅଗ୍ରଦୂତ' ସଙ୍ଘ ଏତେ କଷ୍ଟ କରି ସ୍ଥାପନ କଲୁ ସେଇଟା ଆଜି ଗୋବିନ୍ଦ ଘରୁ ଉଠାଇ ଦିଆହେଲା । ମୁଁ, ଗୋବିନ୍ଦ, ପ୍ରଣବ, ଗୋପାଳ ମିଶି ବହିପତ୍ରୁ ପ୍ରଣବର ଘରକୁ ନେଇ ଆସିଲୁ । ଆସିବାର ଆଗେ ସେ ଘରଟାକୁ ପ୍ରଣାମ କଲି । ଛାଡ଼ିବା ସମୟରେ ଖୁବ୍ ମାୟା ଲାଗିଲା ।

ଆଜି ଦ୍ୱିପ୍ରହରରେ ବାପାଙ୍କୁ ପଚାରିଲି କେଉଁଠି ପଢ଼ିବି । ବାପା ପଚାରିଲେ ଧୁବୁରିରେ ପଢ଼ିବୁ ନା ଗୌହାଟୀରେ । ମୁଁ କହିଲି ଗୌହାଟୀରେ । ତାପରେ ମୁଁ କହିଲି ଶାନ୍ତିନିକେତନରେ ଭର୍ତ୍ତି ହେବାର ଇଚ୍ଛା ଅଛି । ବାପା କହିଲେ, ନା ! କଲିକତାରେ ପଢ଼ । ମୁଁ ଆନନ୍ଦରେ ଫାଟି ପଡ଼ିଲି ।

|| ୧୩.୭.୬୯ : ସୋମବାର ||

ଦିନଟା ଭଲଭାବରେ ଗଲା । ହରିଲାଲ ସହିତ ଆଜି ଅନେକ ଆଲାପ ଆଲୋଚନା ହେଲା । ତାର କଥାଗୁଡ଼ା ଆଜି ମୋତେ ଖୁବ୍ ଭଲ ଲାଗିଲା । ତାକୁ ମୁଁ ଖୁବ୍ ଭଲପାଏ ।

|| ୧୪.୭.୬୯ : ମଙ୍ଗଳବାର ||

ମୋର ଶରୀରରେ, ମଥାରେ, ମନରେ ଏବଂ ପ୍ରାଣରେ ଗୋଟିଏ ଭୀଷଣ ଝଡ଼ ବହୁଛି । କଣ ନେବି କଣ ନେବିନାହିଁ, କଣ କରିବି କଣ କରିବିନାହିଁ ? କେଉଁ କଲେଜରେ ଆଡ୍‌ମିଶନ ନେବି ? ଇତ୍ୟାଦି । ଧୁବୁଡ଼ି ଗଲି ସ୍ଲିପ (ମୋ ହେ)କୁ ନେଇ । କଲେଜକୁ ଗଲି । କାମ ହେଲାନାହିଁ ।

ଟ୍ରେନରେ ଲାଇନ ଦେଲାନାହିଁ । ତାପରେ ଡ୍ରାଇଭର ଟେଣ୍ଡଗୋଳ ଲଗାଇଲା । ସାଢ଼େ ଦଶଟାରେ ଟ୍ରେନ ଧୁବୁରୀରୁ ଛାଡ଼ିଲା । ୧୧।୧୫ରେ ପହଞ୍ଚିଲି । ଶରୀର, ମନ, ପ୍ରାଣ ସବୁ ଅସୁସ୍ଥ ।

|| ୧୫.୭.୬୯ : ବୁଧବାର ||

କଣ କରିବି କଣ ନକରିବି ଭାବନା । ଶରୀରର ଅବସ୍ଥା ଭଲ ନୁହେଁ । ଥରେ ଭାବେ ଗୌହାଟୀରେ ଭର୍ତ୍ତି ହେବି, ପୁଣି ଥରେ ଭାବେ ଶାନ୍ତିନିକେତନରେ ପଢ଼ିବି । ଶାନ୍ତିନିକେତନ—ଗୌହାଟୀ, ଗୌହାଟୀ—ଶାନ୍ତିନିକେତନ, କଣ କରିବି, କ କରିବି, ମହା ଚିନ୍ତା । ରାମ ! ରାମ ! ରାମ ଏମିତି ହେଲେ କିଛିଦିନ ଭିତରେ ମଥା ଘାରିଲା ହୋଇଯିବ ।

॥ ୨୭ ଜୁଲାଇ ୧୯୬୯ : ଗୁରୁବାର ॥

କରଦା'ଙ୍କ ପାଖକୁ ଗଲି । ଶାନ୍ତିନିକେତନ ବିଷୟରେ ଆଲୋଚନା କଲି । ମା' ମୋତେ ବୁଦ୍ଧି ଦିଅ । ମୁଁ ବୁଦ୍ଧିହୀନ ।

ନଗେନଠାରୁ ମୁଁ ଏବଂ ପ୍ରଣବ ଗଳ୍ପବହି ନେଇ ଆସିଲୁ । ମସ୍ତିଷ୍କର ଅବସ୍ଥାଟା ଖୁବ୍ ଖରାପ । କଣ କରିବ ରାମ, ତୁମେ ମୋତେ ବୁଦ୍ଧି ଦିଅ ।

॥ ୧ ଅଗଷ୍ଟ ୧୯୬୯ : ଶୁକ୍ରବାର ॥

ମୁଁ ଏବଂ ସୁବଳ ସରକାର (ଧୂବୁଡ଼ି) ଜିଲ୍ଲା ଲାଇବ୍ରେରୀକୁ ନେଇ ଯାଇଥିଲୁ । ମା'ଙ୍କୁ (ଯୋଗମାୟା ଦେବୀ) ପ୍ରଣାମ କରିବାକୁ ଗଲି । ମା'ଙ୍କୁ କହିଲି ମୋର ପାଠ ହେଉନି । ମନ ଭଲ ଲାଗୁନି । ନିଜକୁ ହୀନ ହୀନ ଲାଗେ । କଣ ଦୋଷ ଅଛି ? ମା' କହିଲେ ଧ୍ୟାନରେ ଦେଖିବି । ମୁଁ ଆଜି ଗଲି । ମା ଧ୍ୟାନରେ ଦେଖିନାହାନ୍ତି, ଭୁଲି ଯାଇଛନ୍ତି । କାଲି ଦେଖିବେ ବୋଲି କହିଲେ ।

॥ ୨ ଅଗଷ୍ଟ ୧୯୬୯ : ଶନିବାର ॥

ସକାଳେ ମା'ଙ୍କ (ଯୋଗମାୟା ଦେବୀ) ପାଖକୁ ଗଲି । ହାତ ଦେଖାଇଲି । କହିଲେ ଖୁବ୍ ବିଦେଶ ଭ୍ରମଣ ଅଛି । ବିଦ୍ୟା, ଆୟୁ, ଲାଭ, ଖରଚ ଭଲ ଅଛି । ଯେ କହିଲେ ମୁଁ ମା'ଙ୍କୁ (କାଳୀଙ୍କୁ) ପଚାରିଥିଲି । ମୋର ରାହୁ ଏବଂ ଶନିର ଦୋଷ ଅଛି । ତିରିଶ ଟଙ୍କା ଲାଗିବ ଗ୍ରହଶାନ୍ତି କରିବା ପାଇଁ ଏବଂ ତାପରେ ଗୋଟିଏ ତାବିଜ ଦେବି । ସବୁ ଠିକ୍ ହୋଇଯିବ । ମୁଁ ଧାର କରି ଟଙ୍କା ଦେଲି ।

॥ ୩ ଅଗଷ୍ଟ ୧୯୬୯ : ରବିବାର ॥

ବିଶେଷ କିଛି ଘଟିନାହିଁ ।

॥ ୪ ଅଗଷ୍ଟ ୧୯୬୯ : ସୋମବାର ॥

ମୁଁ ଯୋଗମାୟା ଦେବୀଙ୍କ ପାଖକୁ ୫ଟାରେ ଗଲି । ସେ ଶୋଇଥିଲେ । ମୁଁ ସେଦିନ ଫେରି ଆସିଲି ।

॥ ୫ ଅଗଷ୍ଟ ୧୯୬୯ : ମଙ୍ଗଳବାର ॥

ମୁଁ ୨ଟା ପରେ କଲେଜ ଛୁଟିପରେ ମା'ଙ୍କ ପାଖକୁ ଗଲି । ମା ମୋର ଅପେକ୍ଷାରେ ଥିଲେ । ମୁଁ ଗଲି । ମା ମୋତେ ବସିବାକୁ କହିଲେ । ମୁଁ ବସିଲି । ମା ଭିତର ଘରକୁ ଯିବାକୁ କହିଲେ । ମୁଁ ଭିତର ଘରକୁ ଗଲି । ମା ମୋତେ ତାବିଜ ଦେଲେ ଏବଂ ଗୋଟିଏ ଲାଲ କପଡ଼ା ଦେଲେ ଏବଂ ସେଇ ଗ୍ରେଟ କପଡ଼ା ପିନ୍ଧିବା ସମୟରେ ରୁମାଲରେ ବାନ୍ଧି ରଖିବାକୁ କହିଲେ ।

ସେ ମୋତେ କହିଲେ କାଳୀ ମା' ମୋ ଉପରେ ଗୋଟିଏ ଆଦେଶ କରିଛନ୍ତି ।

ଆଜିନ ହେଲା ଏଇ ଯେ ଆଗରେ ମୋର ଗୋଟିଏ ବଡ଼ ବିପଦ ଅଛି । ମୋତେ ତାଙ୍କ (ମାଙ୍କ) ଠାରୁ ମନ୍ତ୍ର ନେବାପାଇଁ କହୁଛନ୍ତି । ମୋର କୁଆଡ଼େ ଖୁବ୍ ଭକ୍ତି ଅଛି କାଳୀଙ୍କ ପଡି, ଏବଂ ଶରନ୍ଦନ ମଧ୍ୟ ହେବ ।

ପ୍ରଣବ ମୋତେ ମନ୍ତ୍ର ନେବାପାଇଁ ମନାକରେ ।

|| ୬ ଅଗଷ୍ଟ ୧୯୬୯ : ବୁଧବାର ||

ଆଜି ମୁଁ ଧୂବୁଶରେ ଯୋଗମାୟା ଆଶ୍ରମକୁ ଗଲି । ମା ମୋତେ ଅନେକ ସମୟ ଅପେକ୍ଷା କରି ବାହାରକୁ ଯାଇଥିଲେ ଏବଂ ମୋତେ ବସାଇ ରଖିବା ପାଇଁ ତାଙ୍କର ଗୋଟିଏ ଶିଷ୍ୟଙ୍କୁ ବସେଇ ଦେଇ ଯାଇଥିଲେ ।

ମା ମୋତେ ଗୋଡ଼ ଧୋଇବାକୁ କହିଲେ । ମୁଁ ହାତ ଗୋଡ଼ ଧୋଇ ଆସିଲି । ମା ମୋତେ ମନ୍ଦିରକୁ ନେଇଗଲେ । କାଳୀଙ୍କ ସମ୍ମୁଖରେ ସେ ମୋତେ ବସାଇଲେ ଏବଂ ନିଜେ ବସିଲେ । ମୋର ମଥାରେ ହାତ ରଖିଲେ ଏବଂ କାନରେ ମନ୍ତ୍ର ଦେଲେ । ମନ୍ତ୍ର କାହାରକୁ ନଦେଖାଇବାକୁ କହିଲେ । ଦେଖାଇଲେ ତୁମର ଏବଂ ମୋର ମଧ୍ୟ ଖରାପ ହୋଇଯିବ । ମୁଁ ଆଜି ଦୁଇ ଘଣ୍ଟା ପିରିଅଡ଼ ନଷ୍ଟ କଲି । ମନ୍ତ୍ରଟା ଶେଷ ପୃଷ୍ଠାରେ ଅଛି ।

ମା କହିଲେ ମା କାଳୀ ଏମିତି କାହାକୁ ଯାଚି ମନ୍ତ୍ର ଦେବାକୁ କହେନା । ମୁଁ ପନ୍ଦରଦିନରୁ କହିଲେ ଛଅ ମାସରେ କାଳୀଙ୍କୁ ପାଇବ ।

|| ୧୧ ଅଗଷ୍ଟ ୧୯୬୯ : ସୋମବାର ||

୬ଟାରେ ଉଠିଲି । ୮ଟା ବସରେ ଉଠିଲି କଲେଜ ଯିବାପାଇଁ । 'ଅନର୍ସ' କ୍ଲାସ ୧୨ଟରେ ଆରମ୍ଭ ହୁଏ । ମୁଁ ବି. ଏ.ରେ 'ଫିଲୋସୋଫି ଅନର୍ସ' ନେଇଛି ।

ଆମର ପ୍ରଥମ କ୍ଲାସ ପ୍ରଫେସର ବାଗଚିଙ୍କ କ୍ଲାସ । ସେ 'ୱେଷ୍ଟର୍ନ ଲଜିକ୍' ପଢାନ୍ତି । ଅଫ୍ ପିରିଅଡ଼ରେ କିଷ୍ଟି ହୋଷ୍ଟେଲକୁ ଗଲି ଚା ଖାଇବାକୁ । ହରିଲାଲକୁ ସେଠାରେ ପାଇଲି ନାହିଁ । ପଚାରିଲି । ରାମବାବୁ କହିଲେ ସେ ଚାଲିଯାଇଛି । ମୋର ମନ ଖରାପ ହେଲା ଯେ ମୁଁ ହରିଲାଲ ସହିତ ଦେଖା କରିପାରିଲି ନାହିଁ ।

ମୋର ମନ ବର୍ତ୍ତମାନ ଆମ କ୍ଲାସର ଗୋଟିଏ ଯୁବକ ପ୍ରତି ଆକୃଷ୍ଟ ହୋଇଛି । କିନ୍ତୁ ବର୍ତ୍ତମାନ ମୋର ହୃଦୟର ପ୍ରଥମ ସ୍ଥାନ ଗ୍ରହଣ କରିଛି ହରିଲାଲ । ମୁଁ ଆମ କ୍ଲାସର ଆଉ ଗୋଟିଏ ଝିଅକୁ ଭଲପାଏ । ତାର ରୋଲ ନମ୍ବର ୩୪ ।

ତା ସହିତ ମୋର ଦେଖାହୁଏ କେବଳ 'ଇଂରାଜୀ' କ୍ଲାସରେ । ମୁଁ ଆଉ ଗୋଟିଏ ଝିଅକୁ ଅଳ୍ପ ଅଳ୍ପ ଭଲ ପାଏ । ଦ୍ୱିତୀୟ ବାର୍ଷିକ ଶ୍ରେଣୀର ଜଣେ ଝିଅକୁ । ସେ 'ସେକେଣ୍ଡ ଇୟର'ରେ ପଢ଼େ । ମୁଁ ଯେଉଁ ଖାତାରେ ଲେଖୁଛି ଏଇଟା ଆଜି

କଣିଲି । ଦାମ୍ ଟ ୨୪୦ ଟଙ୍କା । ମୁଁ ଦେଖେ କଲମରେ ଲେଖୁଛି ଏଇଟା ଆଜିବ କଣିଛି । ଦାମ୍ ୧୦ ଟଙ୍କା । ଉପେନ୍ ଘୋଷ, ଗୋବିନ୍ଦ ଏବଂ ମୁଁ ଅନେକ ସମୟ ଦର୍ଜିଙ୍କ ଧବୁର ଟାଉନରେ ଘୁରାଘୁରି କଲୁ ।

ତଲେ ମୁଁ କାଲିଠୁ ଗୋଟିଏ ପଟଣା ଦେଲି । ଆଜି ମୁଁ ପାଇଖାନା ଯାଇ ପ୍ରଥମେ ମୋର ଲିଙ୍ଗର ବାଳ କାଟିଲି । ବାପାଙ୍କର ବ୍ଲେଡରେ । ତାପରେ ହସ୍ତମୈଥୁନ କଲି । ବୀର୍ଯ୍ୟ ହାତରେ ନେଇ ଖାଇଲି । ଦେହ ଗରମ ଗରମ ଲାଗିଲା ।

ଅପରାହ୍ନରେ ପ୍ରଣବ, ଗୋପାଳ ଏବଂ ବାବୁରାମ ସହିତ ଆଲୋଚନା କଲି ଯେ ଏଇଟା ଖାଇଲେ କଣ ହୁଏ । ମାନସିକ ଅବସ୍ଥା ଭଲ ଅଛି ।

|| ୧୨ ଅଗଷ୍ଟ ୧୯୬୯ : ମଙ୍ଗଳବାର ||

ସକାଳ ସମୟରେ ବହି ଝଡ଼ାଝଡ଼ି କରୁଅଛି, ଏତିକବେଳେ ନନ୍ଦଲାଲ ଆସିଲା ପି. ୟୁ. ଶ୍ରେଣୀ ଇତିହାସର ପ୍ରଶ୍ନ ଲେଖିବା ପାଇଁ । ପ୍ରଣବ ଏବଂ ବାବୁରାମ କିଛି ସମୟ ପରେ ଆସିଲେ । ବସି ଆଳାପ କମାଇଛୁ । ଏତିକବେଳେ ହୀରାଲାଲ ଅସିଲା, ଯାହାକୁ ମୁଁ ବର୍ତ୍ତମାନ ସମସ୍ତଙ୍କ ଠାରୁ ବହୁତ ବେଶୀ ଭଲ ପାଏ । ମୋତେ ଖୁବ୍ ଭଲ ଲାଗିଲା । କିଛି ସମୟ ପରେ ମୁଁ, ନନ୍ଦଲାଲ, ପ୍ରଣବ ଏବଂ ହୀରାଲାଲ ବାହାରକୁ ଯାଇ ବୁଲିଲୁ । ଆଜି ହରତାଳ । କେବଳ ଗୋଲାପୀ ଫିଲ୍ମ ଚାଲିଛି । ସବୁ ଦୋକାନ ବନ୍ଦ । ଆଜି ବଜାର ମୃତ ମୃତ ମନେହୁଏ ।

ଦ୍ୱିପ୍ରହର ଖୁବ୍ ଗରମ । ଛଟପଟ ହେଉଅଛି ବର୍ତ୍ତମାନ ବସି ବସି ଡାଇରୀ ଲେଖୁଅଛି । ସନ୍ଧ୍ୟା ସମୟରେ ସାଇକେଲ ଚଢି ମୋତିର ଦୋକାନ ଆଡ଼କୁ ଯାଉଛି ଏତିକବେଳେ ନନ୍ଦଲାଲ ମୋତେ ବାବୁରାମ ଘରୁ ଡାକିଲା । ମୁଁ ସାଇକେଲ ଘୁରେଇ ସେଆଡ଼କୁ ଗଲି ।

ଆଜି ମୁଁ, ହୀରାଲାଲ, ପ୍ରଣବ, ଗୋପାଳ ଏବଂ ନନ୍ଦଲାଲ ଫାର୍ମ ଆଡ଼କୁ ବୁଲିବାକୁ ଗଲୁ । ବହୁତ ଅଛା ତାମସା ହେଲା । ନନ୍ଦଲାଲକୁ 'ଚେଙ୍ଗର' ବୋଲି ବଡ଼ାଇଲୁ । ମୋର ଏବଂ ହୀରାଲାଲ ନିକଟରେ ସାଇକେଲ ଥିଲା । ଆମେ ସାଇକେଲ ଚଲାଇବାରେ ପ୍ରତିଯୋଗିତା କଲୁ । ମୁଁ ଜିତିଲି । ହୀରାଲାଲ ବର୍ତ୍ତମାନ ମୋତେ ଘୃଣା କରେନା ମନେହେଲା । ମୋର ମନ ପ୍ରଫୁଲ୍ଲ ।

ଘରେ ସାଇକେଲ ରଖି ପୁଣି ରାସ୍ତାକୁ ଗଲି । ଗଣେଶ ଦା' (ଖେଳାଖେଳିର) ଠିଆ ହୋଇଥିଲେ । କଥାବାର୍ତ୍ତା ଆରମ୍ଭ କଲି । ଏତିକବେଳେ ପ୍ରଣବ, ଗୋପାଳ ଏବଂ ନନ୍ଦଲାଲ ଆସିଲେ । ନନ୍ଦଲାଲ ମୋତେ ମଙ୍ଗଳାର ମିଠା ଦୋକାନକୁ ନେଇ ମିଠା ଖୁଆଇଲା । ୪୦ ପଇସା ଦାମ ।

ଅକ୍ତି ଖୁବ୍ ଗରମ । ଦେହ ଝାଳ୍ଚ ଯାଉଚି ନାହିଁ । ମୁଁ ଜାମା ପେଣ୍ଟ ସବୁ ଖୋଲି ଦେଇଛି ।

ପଢ଼ାପଢ଼ି କିଛି ହେଉନାହିଁ । ଅନେକ ଗପ୍ କରିଦେବ ବୋଲି ବେଳେବେଳେ ଭାବୁଛି । ହୀରାଲାଲ ସହିତ ଆହୁରି ଘନିଷ୍ଠ କରିବାକୁ ହେବ । ମୋର ଛ୍ଲାସର କେହି ସହିତ ବନ୍ଧୁତା କରିବାକୁ ପଡ଼ିବ । ମନ୍ଦ କାମ ହେଉନାହିଁ ।

॥ ୧୩ ଅଗଷ୍ଟ, ୧୯୬୯ : ବୁଧବାର ॥

ଆଜି ଦିନଟି ଭଲ ଭାବରେ କାଟିଲି । ସକାଳେ ୯ଟା ବେଳେ ଗାଡ଼ିରେ ଧୁବୁରି ଗଲି । କେତେକ ଷ୍ଟେସନରେ ହୀରାଲାଲ ସହିତ ଦେଖାହେବ । କିନ୍ତୁ ଦୁର୍ଭାଗ୍ୟକ୍ରମେ ହୀରାଲାଲ ଗାଡ଼ିରେ ଯାଇନ । ଶେଷରେ ସେ ବସରେ ଆସିଛି ।

ଅପରାହ୍ନ ୧୪୫ ବେଳେ ମୁଁ ଏବଂ ହୀରାଲାଲ କିଷ୍ଟା ହୋଟେଲକୁ ଗଲୁ । ହୀରାଲାଲ ମୋତେ ମିଠା ଦେବା ପାଇଁ କହିଲା । ମୁଁ ଖୁବ୍ ଖୁସି ହେଲି, ଆଉ ଖୁବ୍ ଆନନ୍ଦରେ ମିଠାର ଅର୍ଡର ଦେଲି ।

ପି· ୟୁ· ଶ୍ରେଣୀର ବିଜୟ ହଜାରି ସହିତ ଆଜି ଅଳ୍ପ ବନ୍ଧୁତା ହେଲା । କାହିଁକିନା ଏକା ସାଥିରେ ଚା ଖାଇଛୁ । ଚା ପଇସା ମୁଁ ଦେବାକୁ ଇଚ୍ଛାକଲି । ସେ ମଧ୍ୟ ଦେବାକୁ ଇଚ୍ଛାକଲା । ଶେଷରେ ସେ ଦେଲା । ରାମବାବୁ ତାର ପଇସା ଫେରାଇ ନେଲେ । କାହିଁକିନା ରାମବାବୁ ଆମର ବନ୍ଧୁ । ଏଇକଥା ହୀରାଲାଲ ଶୁଣି କହିଲା "ରାମବାବୁ ଅନ୍ୟ କେହି ଦେବାକୁ ଚାହିଁଲେ ଉପରେ ଉପରେ ନା କରନ୍ତି କିନ୍ତୁ ତା'ର ଠାରୁ ନେବନ୍ତି ।" ଏକଥା ଶୁଣି ଆମର ଖୁବ୍ ହସ ହେଲା । କିଷ୍ଟା ହୋଟେଲରୁ ହୀରାଲାଲ ବଜାରକୁ ଗଲା । କିନ୍ତୁ ମୁଁ ବି· ଓ· ପି·ରୁ ବସରେ ଉଠିଲି । କିନ୍ତୁ ମୁଁ ଭୁଲରେ ଗୋଲକଗଞ୍ଜ ପରିବର୍ତ୍ତେ ଭାଓରାଗୁଡ଼ି ବସରେ ଉଠିଲି । ଦୁଇଟା ବସ ରଙ୍ଗ ଏକା । ମୁଁ ଗୌରୀପୁରରେ ଓହ୍ଲାଇଲି । ଏଆଡ଼େ ସେଆଡ଼େ ବୁଲିବୁଲି କରି ଦୋକାନର ଆଇନାରେ ନିଜର ଚେହେରା ଦେଖିବାରେ ଲାଗିଲି । ମୁଁ ବର୍ତ୍ତମାନ ବାଳରେ ଅଳ୍ପ ତେଲ ଦିଏ । ବେଶ ସୁନ୍ଦର ଲାଗେ । ଅଇନାରେ ନିଜର ଚେହେରାଟା ଦେଖି ଦେଖି ଖୁବ୍ ଆନନ୍ଦ ହୁଏ ଏବଂ ମନେ ମନେ ଭାବେ ମୋତେ ହୁଏତ ହୀରାଲାଲ ବା ଆମ କ୍ଲାସର କେହି ଭଲପାଏ । ଦୁଃଖର ବିଷୟ କାହା ସହିତ ମୋର କେବଳ ଇଂରାଜୀ ବିଷୟଟା ମିଳେ ।

ଘରେ ଆସି ଅଇନାରେ ଚେହେରା ଦେଖିବାରେ ଲାଗିଲି । ଗରମ ଯୋଗୁ ସାର୍ଟ ଖୋଲି ଚେହେରା ଅଇନାରେ 'ଦେଖିବାକୁ ଆରମ୍ଭ କଲି । ପାନ ଫାନ ଖାଇଲି । ତାପରେ ବାଳ ଝାଡ଼ି ଝାଡ଼ି ବାରଣ୍ଡାରେ ଠିଆ ହେଲି । ହୀରାଲାଲକୁ ଦେଖେଇବାକୁ ।

— ପ୍ରଣବ ଆସିଲା ।

ପ୍ରଣବ ସହିତ ମନୋବିଜ୍ଞାନ ଆଦି ବିଷୟରେ ଆଲୋଚନା ଆରମ୍ଭ କଲି । ହୀରାଲାଲ ଆସିଲା । କ'ଣ କରୁଛୁ ବୋଲି ପଚାରିଲା ।

ଶୁକ୍ରବାର ଦିନ ଧୁବୁଡ଼ିର ବସନ୍ତ ଟକିଜ୍‌ରେ 'ଅଶୋ' ହିନ୍ଦୀ ଫିଲ୍ମ ଆସିବ । ହୀରାଲାଲ ୩ଟା ଟିକେଟ କାଟିବା ପାଇଁ ଗୋଟିଏ ପିଲାକୁ କହିଲା । ତା ଭିତରେ ଗୋଟିଏ ମୋ ପାଇଁ, ଗୋଟିଏ ହୀରାଲାଲ ପାଇଁ ଆଉ ଗୋଟିଏ ତା ନିଜପାଇଁ । ହୀରାଲାଲର ଏକଥା ଶୁଣି ଆନନ୍ଦ ଲାଗିଲା । ହୀରାଲାଲ ସହିତ କିଛି ସପ୍ତାହ ହେବ ସିନେମା ଦେଖିନି ।

ସନ୍ଧ୍ୟାରେ ଗୋପାଳ, ବାବୁରାମ ସହିତ ଦେଖାହେଲା । ବର୍ତ୍ତମାନ ମୋର ସବୁ ଜୀବନର କେନ୍ଦ୍ର ହୀରାଲାଲ ।

|| ୧୪ ଅଗଷ୍ଟ ୧୯୬୯ : ଗୁରୁବାର ||

ସକାଳ ଗାଡ଼ିରେ କଲେଜକୁ ଗଲି । ଆଜି ଅନର୍ସ ଛାଡ଼ିବା ପାଇଁ ଦରଖାସ୍ତ ଦେଲି । ବିଭାଗୀୟ ମୁଖ୍ୟଙ୍କର ଦସ୍ତଖତ ନେଲି । ଆଜି ହୀରାଲାଲ କଲେଜକୁ ଯାଇନି । କାରଣ ଆଜି ଗୋଲକଗଞ୍ଜର ହାଟ ପାଳି । ସେ ହାଟରେ ଚୋଟ କିଣା ବିକି କରେ ।

ଆଜି ଗୋଟିଏ ହାସ୍ୟକର ଘଟଣା ସୃଷ୍ଟି ହେଲା । କ୍ଲାସରେ ଜଣେ ମୋଟୁ ଛାତ୍ର ଆସିଛି । ସେ ମୋତେ ପଚାରିଲା, "ଆପଣ ୧୯୬୮ ପି· ୟୁ· ପରୀକ୍ଷା ଦେଇଛନ୍ତି ନା ନାହିଁ ? ଏବଂ ଆପଣଙ୍କ ତର୍କଶାସ୍ତ୍ର ଥିଲାନା ?" ମୁଁ କହିଲି, ନା ତ ମୁଁ ୧୯୬୯ରେ ପରୀକ୍ଷା ଦେଇଛି । ସେ କହିଲା ଠିକ୍ ମୋ ଭଳି ଜଣେ ପିଲା ୧୯୬୮ ପି. ୟୁ. ଶ୍ରେଣୀର ପରୀକ୍ଷା ମୋ ବେଞ୍ଚରେ ଦେଇଥିଲା । ସେ କହିଲା ଠିକ୍ ମୋ ଭଳି ତାର ମୁହଁ ଥିଲା । ଠିକ୍ ମୋର ଭଳି ତାର ବାଳ, ଠିକ୍ ମୋର ଭଳି ମୁହଁର ଶୈଳୀ", ଖୁବ୍ ଆଶ୍ଚର୍ଯ୍ୟର କଥା ।

ମୁଁ ସେଇ ପିଲାକୁ ବିଷ୍ଣୁ ହୋଟେଲକୁ ନେଲି । ଚା ଖୋଇଲି । ଏମିତ ଏ ପିଲା ସହିତ ବନ୍ଧୁତା ହେଲା । ତାର ସହିତ ବନ୍ଧୁତା ହେବାରୁ ଆଉ ଗୋଟିଏ ଲାଭ ହେଲା ଯେ ସେ ମୁଁ ଯେଉଁ ସଞ୍ଜୀବ କର ନାମର ପିଲାକୁ ଭଲପାଏ ତାର ସେ (ମୋଟୁ) ବନ୍ଧୁ ।

ଆଜି ଘରକୁ ଫେରିଲି । ଅପରାହ୍ଣରେ ଆକାଶ ଖରାପ ଥିଲା, ଏବଂ ବର୍ଷା ଆରମ୍ଭ ହେଲା । ତଥାପି ମୁଁ, ପ୍ରଣବ ଏବଂ ଗୋପାଳ ବୁଲିବୁଲି ଷ୍ଟେସନ ଆଡ଼କୁ ଗଲୁ । ୭ଟା ବେଳେ ଫେରିଲି ।

ଦିନଟି ଭଲ ଭାବରେ ଯାଇଛି । ମନ, ପ୍ରାଣ, ଶରୀରଟା ଭଲଥିଲା ।

ଅଜି ମୋର ମନେହୁଏ କାହାର ଅନ୍ତରରେ ଆଘାତ ଦେଇନି । ଗୋବନ୍ଦ, ବାଦଲ ଦରୁ ଗୋଟିଏ କାର୍ଡ ଆଣିବାକୁ କହିଲା । ମୁଁ ସେ କାମଟା କଲି ନାହିଁ । ଗୋବନ୍ଦ ସେଥିପାଇଁ ଆଘାତ ପାଇଛି କ ନା' ଜାଣେନା ।

ରାତରେ କ ସ୍ୱପ୍ନ ଦେଖିଲି ଭଲଭାବେ ମନେ ନାହିଁ ।

|| ୧୫ ଅଗଷ୍ଟ ୧୯୬୯ : ଶୁକ୍ରବାର ||

ଆଜି ମୁଁ ୭।୧୫ ମିନିଟରେ ଉଠିଲି । ଆଜି ସ୍ୱାଧୀନତା ଦିବସ । ପତାକା ଉତ୍ତୋଳନ ଦେଖିବାକୁ ମୁଁ ଗଲି ନାହିଁ ।

ସାଢେ ୮ଟାରେ ହୀରାଲାଲ କହିଲା, କେତେବେଳେ ଧୁବୁରି ଯିବୁ ? ମୁଁ କହିଲି ଖାଇପିଇ ଯିବା । ସାଢେ ୧୦ଟାରେ ହୀରାଲାଲର ଘରକୁ ଗଲି । ହୀରାଲାଲ କହିଲା, ଚାଲ୍ ଯିବା ।

ବାବୁରାମକୁ ବି ନେଇଗଲୁ । ବସଭଡ଼ା, ସିନେମାର ପଇସା ସବୁକିଛି ମୁଁ ଦେଲି । ଗୋପାଳ ପଣ୍ଡିତ ଆମ ସହିତ ଗଲା । ଉପେନକୁ ଅନୁରୋଧ କରି ନେଇଗଲୁ ।

'ଆଖେଁ' ସିନେମା ଆସିବାର ଥିଲା । କିନ୍ତୁ 'ଆଖେଁ' ବଦଳରେ 'ଭକ୍ତ ପ୍ରହ୍ଲାଦ' ଫିଲ୍ମ ଚାଲିଛି । ଆମେ 'ଭକ୍ତ ପ୍ରହ୍ଲାଦ' ଦେଖିଲୁ । ଫିଲ୍ମ ଭଲ ଥିଲା । ମୁଁ, ତାପରେ ହୀରାଲାଲ, ବାବୁରାମ, ତାପରେ ଉପେନ, ଶେଷରେ ଗୋପାଳ ପଣ୍ଡିତଙ୍କ ବସିଲେ ।

କରଦାଙ୍କ ସହିତ ଦେଖାହେଲା । ଆମକୁ ଜିପ୍‌ରେ ନେଇଗଲେ ଗୌରୀପାଲ ପାଇଁ ।

ଧୁବୁରିରୁ ଆସିବାର ସମୟରେ ଆଜି ଟ୍ରେନରେ ଖୁବ୍ ଭିଡ଼ ଥିଲା । ମୁଁ ଏବଂ ହୀରାଲାଲ କବାଟ ନିକଟରେ ଠିଆ ହୋଇ ଅଜି ଅସିଥିଲୁ । ଆମର ଟ ୧୦-୦୦ ଖର୍ଚ୍ଚ ହୋଇଛି ।

ସନ୍ଧ୍ୟାରେ ସ୍କୁଲକୁ ଗଲି 'ଫଙ୍କସନ' ଦେଖିବାକୁ । ବାବୁରାମ ଗୋଟିଏ 'କମିକ୍' ଦେଇଥିଲା ! ବେଶୀ ଭଲ ହୋଇନି । ମୁଁ ଏବଂ ଗୋପାଳ ଶିଖାଇଥିଲୁ । ମୁଁ ଉତ୍ସବକୁ ଯାଇଥିଲି, କେଜାଣେ ହୀରାଲାଲ ସହିତ ଦେଖାହେବ, ସେଥିପାଇଁ । କିନ୍ତୁ ହୀରାଲାଲ ମୋ ଯିବାର ଆଗେ ଚାଲି ଯାଇଥିଲା ।

|| ୧୬ ଅଗଷ୍ଟ ୧୯୬୯ : ଶନିବାର ||

ଆଜି ସକାଳ ୭ଟାରେ ଉଠିଲି । ଗୁରୁ ଦେଇଥିବା ମନ୍ତ୍ରଜପ, ଆସନ, ବ୍ୟାୟାମ ଆଦି କିଛି ହେଉନାହିଁ । ମୁଁ ଖାଲି ପରିକଳ୍ପନା କରୁଛି ।

ସମୟ ସକାଳ ୯ଟା । ମେଘଭରା ଆକାଶ । ଟୁପୁରୁ ଟୁପୁରୁ ବରଷା ହେଉଛି । ମୁଁ ବସ ଚଢିଲି, ଦେଖିଲି ମୋର କ୍ଲାସ ବନ୍ଧୁ ଫଜଓର ବସିଛି । ମୁଁ ମଧ୍ୟ ବସ ପଛ

ସିଟ୍‌ରେ ଫକୀରଓ ପାଖରେ ବସିଲି । ନାନା ଧରଣର କଥାବାର୍ତ୍ତା ହେଲା ।

୧୦ଟା ବେଳେ ଗାଡ଼ି ଧୁବୁଲେରେ ପହଞ୍ଚିଲା । ୧୧।୯ରୁ କଲେଜ । ଅଜି ଅନର୍ସ ଛାଡ଼ିବାର ଦରଖାସ୍ତ ଗ୍ରାଣ୍ଟ୍ କରି ଆଣିଲି ପ୍ରିନସିପାଲ୍‌ଙ୍କ ଠାରୁ । ୫ଟଙ୍କା ଫାଇନ୍ ଦେବାକୁ ହେବ ।

୨।୯ରେ ଛୁଟି ହେଲା । ବର୍ଷା ହେଉଅଛି । ଛତା ନେଇ ଯାଇନି । ପୁଣି ସିନେମା ଦେଖିବାର ଇଚ୍ଛା । ସ୍ୱରାଲାଲ ଆଜି କଲେଜକୁ ଆସିନି । ଆସିବାର କଥା ଥିଲା, କିନ୍ତୁ କାହିଁକି ଯେ ଆସିଲାନାହିଁ ମୁଁ ଜାଣିନି ମୋ ମନ ଭାଙ୍ଗିଗଲା । ସ୍ୱରାଲାଲ ନହେଲେ ସିନେମା ଦେଖିବାକୁ ଭଲ ଲାଗେନା । ପି. ୟୁ. ଶ୍ରେଣୀର ବିଜୟ ସହିତ ଦେଖାହେଲା । ସେ ସିନେମା ଦେଖିବାକୁ କହିଲା । ମୁଁ ବର୍ତ୍ତମାନ ବିଜୟ ସହିତ ବନ୍ଧୁତା କରିଛି କାହିଁକନା ଯେ ସ୍ୱରାଲାଲ ସହିତ ପଢ଼େ ।

ନିଷ୍ଠା ହୋଟେଲରେ ଉପେନ ଚା ଖୁଆଇଲା । ସେଠାରୁ 'ରୂପାଲି' ହଲକୁ ଗଲୁ । 'ଏକ୍ କଲି ମୁସ୍କୁରାଇ' ଚାଲିଥିଲା । ଫିଲ୍‌ଟା ଭଲ ଲାଗିଲା ନାହିଁ । ତିନି ଜଣଙ୍କୁ (ବିଜୟ, ଉପେନ, ମୁଁ) ମୁଁ ଦେଖାଇଲି । ମୋର ଖୁବ୍ ବେଶୀ ପଇସା ଖରଚ ହେଉଛି । କଣ କରାଯାଏ । ବର୍ତ୍ତମାନ ଖର୍ଚ୍ଚ କମାଇବାକୁ ପଡ଼ିବ ।

ସନ୍ଧ୍ୟାରେ (୫।୩୦) ସମୟରେ ସିନେମା ଶେଷହେଲା । ଦୁପହରୁ ଟାପର ବର୍ଷା ହେଉଅଛି । ଆମେ ଟ୍ରେନର ସେକେଣ୍ଡ କ୍ଲାସରେ ଉଠିଲୁ । କମଲ ଭାଇନା ସହିତ ସିନେମା ହଲରେ ଦେଖାହେଲା । ୭।୯ରେ ଗୋଲକଗଞ୍ଜରେ ପହଞ୍ଚିଲି ।

ଗୋବିନ୍ଦ ଦଶ ପଇସା ଖର୍ଚ୍ଚ ହେବାର ଭୟରେ କଲେଜ ଛୁଟୀର ଘଣ୍ଟେ ଘଣ୍ଟେ ପଳାଇଲା ।

ଆଜି ସ୍ୱରାଲାଲ ସହିତ ଦେଖା ହୋଇନି । ମନ ଭଲ ନାହିଁ । ମନ କେମିତି କେମିତି ଲାଗେ । ଶରୀର ଏକପ୍ରକାର ଭଲ ଅଛି ।

|| ୧୭ ଅଗଷ୍ଟ ୧୯୬୯ : ରବିବାର ||

୭।୯ ମିନିଟ୍‌ରେ ପାଇଖାନାକୁ ଗଲି । ହାତ ମୁହଁ ଧୋଇ ଧୋଇ ୭।୩୦ ବାଜିଲା । ମା ସବୁଦିନ ଖୁବ୍ ପାଟିକରେ ମୁଁ ଡେରିକରି ଉଠେବୋଲି । ଆଜିବି ବହୁତ ପାଟିକଲା । ସ୍ୱରାଲାଲ ସହିତ ଦେଖା ହୋଇନାହିଁ, ମନ ଖରାପ ।

ମନ ବର୍ତ୍ତମାନ ମୋର କଣ ଚାହେଁ ମୁଁ ଜାଣେନା । ବର୍ତ୍ତମାନ ମୋର ପଢ଼ା ପଢ଼ି ଆଦୌ ହେଉନାହିଁ । କଣ କରିବି ବା କଣ ନ କରିବି ! ମୁଁ ସ୍ୱରାଲାଲ ସହିତ ସବୁ ସମୟରେ ରହିବାକୁ ଚାହେଁ । ପରିଶ୍ରମ ବେଶୀ କରିପାରିବିନି ବୋଲି ଅନର୍ସ ଛାଡ଼ିଲି । ଏନ.ସି.ସି.ର ଫର୍ମ ପୂରଣ କରି ଥୋଇଛି, କିନ୍ତୁ ପ୍ୟାରେଡ଼ କରୁନାହିଁ । ମନ

ନେଲା, କିନ୍ତୁ ଜପ କରୁନାହିଁ । କଣ ଯେ ହେଲା ମୋର କେଜାଣି ? ଗଳ୍ପ ବହି ବ ବେଶୀ ପଢୁନାହିଁ । ବର୍ତ୍ତମାନ ମୋ ଅନ୍ତରରେ କୌଣସି ଜିଅର ଯାଗା ନାହିଁ । ଅଳ୍ପ ଅଳ୍ପ, ସାମାନ୍ୟ ସାମାନ୍ୟ, କ୍ଲାସର (୩୪—ଚଣ୍ଡୀ ଚକ୍ରବର୍ତ୍ତୀ) ଝିଅକୁ ଗୃହେଁ ।

ବର୍ଷା ହେଉଅଛି । ଗାଧୋଇବ କ ନାହିଁ ଭାବୁଛି ।

ଦ୍ୱିପ୍ରହରରେ ମୁଁ ଶୋଇଥିଲି, ଏତିକିବେଳେ ବାବୁରାମ ଆସିଲା ଏବଂ ମୋତେ ଉଠାଇଦେଲା । ମୁଁ ମନେ ମନେ ଖୁବ୍ ବିରକ୍ତ ହେଲି । ବାବୁରାମ କହିଲା ମୋତେ ଟେପ୍‌ରେକର୍ଡ ଶୁଣାଅ । ମୁଁ କହିଲି ଆଉ କୋଉଦିନ ଶୁଣିବୁ । ମୁଁ ଆଜି ଦ୍ୱିପ୍ରହରରେ ଶୋଇ ଶୋଇ ଦୁଇବର୍ଷର ପୁରୁଣା ଡାଇରୀ ପଢିଲି । ଖୁବ୍ ଭଲ ଲାଗିଲା ପଢି ।

ବାବୁରାମ ଗୋଟାଏ ବେଳେ ଆସିଲା । ୨ଟା ବାଜିଲା, ୩ଟା ବାଜିଲା ତଥାପି ତାର ଉଠିବାର ନାମ ନାହିଁ । ମୁଁ ମନେ ମନେ ଭୀଷଣ ବିରକ୍ତ ହେଲି । ଶେଷରେ ମୁଁ କହିଲି ମୋର କାମ ଅଛି. ମୁଁ ଭିତରକୁ ଯିବି । ସେତେବେଳେ ସେ ଉଠିଲା ।

ଆଜି ସାରାଦିନ ଖୁବ୍ ବର୍ଷା ହେଉଅଛି । ଘରେ ବସି ବସି ଆଉ ଭଲ ଲାଗୁନି । କଣ କରିବ, କଣ ନକରିବ ।

ଅବଶେଷରେ ଅପରାହ୍ନରେ ବର୍ଷା ଅଳ୍ପ କମିଲା । ମୁଁ ଗୋବିନ୍ଦର ଦୋକାନକୁ ଗଲି । ଗୋବିନ୍ଦ ଦୋକାନରେ ଥିଲା । ସେଠାରୁ ଏମିତି କାଦୁଆ ରାସ୍ତାରେ ବୁଲାବୁଲି କରୁଥିଲୁ । ଏତିକିବେଳେ ସାରଦା (ବ୍ଲୁ ଲିଲି ୟୁନିଅନର ସେକ୍ରେଟାରୀ) ସହିତ ଦେଖା ହେଲା । ସୁରେନ ସହିତ ମଧ୍ୟ ଦେଖାହେଲା ସେତିକିବେଳେ ।

ଗୋପାଳ ଏବଂ ପ୍ରଣବ ପ୍ରମୋଦ ଦୋକାନରେ ଠିଆ ହୋଇଥିଲେ । ପ୍ରଣବ ମୋତେ ତା'ଘରକୁ ନେଲା ମନସା ଦେବୀର ପ୍ରସାଦ ଖାଇବା ପାଇଁ । ମୁଁ ଅଳ୍ପ କିଛି ନେଇ ଖାଇଲି । ଗୋପାଳ ଅନେକ ଖାଇଲା । ଆମେ ବସି ବସି କଥାବାର୍ତ୍ତା କରୁଛୁ, ଏତିକିବେଳେ ଦେଖିଲୁ ଗଣେଶ ଦା'ର ଆବିର୍ଭାବ । ଗଣେଶ ଦା' ଆମକୁ ପରୀକ୍ଷାର ଫଳ ବିଷୟରେ ପଚାରିଲେ । ଆମ କ୍ଲବ୍ ବିଷୟରେ ପଚାରିଲେ । ୧୫ ଅଗଷ୍ଟରେ ଉତ୍ସବ କାହିଁକି ନହେଲା, ପଚାରିଲେ । ମୋତେ ଗଣେଶ ଦା' କହିଲେ ତୁମର ଦର୍ଶନ ନେବା ଉଚିତ୍ ହୋଇନାହିଁ । କାରଣ ଏଇଟା ଚିନ୍ତାଶୀଳ ପିଲାମାନଙ୍କର ବିଷୟ । ମୋର ଖୁବ୍ ରାଗ ହେଲା ଏ କଥା ଶୁଣି । ଅନେକ ଦିନ ପରେ ଦେଖାହେଲା ଗଣେଶ ଦା' ସହିତ, ସେଥିପାଇଁ ମୁଁ କିଛି କହିଲିନାହିଁ । ୭।୧୫ରେ ଘରକୁ ଫେରିଲି । ମା ମୋ ତେଇଯୋ ଗୁଅଳ୍ପ ରାଗିଲା ।

ସନ୍ଧ୍ୟା ସମୟରେ ପଢ଼ାପଢି, ଡାଇରୀ ଲେଖିବାରେ ଗଲା । ରାତିରେ ସ୍ୱପ୍ନରେ ଦେଖିଲି ମୁଁ କାଉଁରୀ କାଠିରେ ମରାମରି କରୁଛି । ରାତି ଶେଷରେ ସ୍ୱପ୍ନଦୋଷ ହେଲା ।

ଥରେ ଖାଇବା ବୋଲି ଭାବିଲି । କିନ୍ତୁ ପରେ ଆଉ ଖାଇଲି ନାହିଁ ।

ଆଜି ମୋ ମନର ଅଳ୍ପ କାମ ଭାବ ଅଛି । ମୁଁ ବର୍ତ୍ତମାନ କଣ ଚାହେଁ । ମୁଁ ଚାହେଁ ସୁଖ, ଶାରୀରିକ ସୁଖ, ମୁଁ ଇନ୍ଦ୍ରିୟ ତୃପ୍ତି କରିବାକୁ ଚାହେଁ । ମୁଁ ଚାହେଁ— ପଢ଼ାପଢ଼ି ଆଦୌ ହେଉନାହିଁ ।

॥ ୧୮ ଅଗଷ୍ଟ ୧୯୬୯ : ସୋମବାର ॥

ଆଜି ୭ଟାରେ ଉଠିଲି । ୧୦ଟାରେ କଲେଜ ଗଲି । କଲେଜରେ ହୀରାଲାଲ ସହିତ ଦେଖାହେଲା । ହୀରାଲାଲ ମୋତେ ପଚାରିଲା, ତୁ କେତେବେଳର ବସରେ ଯିବୁ ? ମୁଁ କହିଲି ୨।୩୦ରେ ଯିବି । ହୀରାଲାଲ ୩ଟା ବସରେ ଆସେ, ମୁଁ ଯାଏ ୪ଟା ବସରେ । ମୋ ବସରେ ଶୈଳେନ ଥିଲା ।

ବର୍ଷା ଆଜି ସାରାଦିନ ହେଉଛି । ସାଇକେଲ ନେଇ ୫।୩୦ରେ ବାହାର ହେଲି । ପ୍ରଥମେ ଗଲି ଗୋବିନ୍ଦ ଦୋକାନକୁ । ପରେ ଗଲି ପ୍ରମୋଦ ଦୋକାନକୁ । କେଜାଣେ ବାବୁରାମ, ପ୍ରଣବ, ଗୋପାଳ, ହୀରାଲାଲ ଆଦି ସବୁ ପିଲାଙ୍କ ସହିତ ଦେଖା ହେବ । ସେଠାରେ ବାବୁରାମ, ପ୍ରଣବ ଏବଂ ଗୋପାଳ ସହିତ ଦେଖାହେଲା । ନାନା ଆଜେ ବାଜେ ଗଳ୍ପ ସଳ୍ପ ପରେ ଘରକୁ ଫେରିଲି ।

ଆଜି ମନ ପ୍ରାଣ ଠିକ୍ ଅଛି । କାଲିଠାରୁ ଆଜି କାମ ବାସନା କମ । 'ରାତିରେ ସ୍ୱପ୍ନଦୋଷ ହୋଇଛି ।'

॥ ୧୯ ଅଗଷ୍ଟ ୧୯୬୯ : ମଙ୍ଗଳବାର ॥

ଆଜି ଗାଡ଼ିରେ ଗଲି । ହୀରାଲାଲ ଏବଂ ପ୍ରଣବ ମୋ ସହିତ ଗଲେ । ଖୁବ୍ ଭଲ ଭାବରେ ଧୁରୁଆକୁ ଗଲି । ମୁଁ ଆଜି ଷ୍ଟିଲର ଦେଢ଼ଶଥିବା ଦାମୀ ଛତା ହଜାଇଦେଲି । ମୁଁ ଟ୍ରେନରୁ ଓହ୍ଲାଇବା ସମୟରେ ଛତାକୁ ଭୁଲି ଯାଇଥିଲି । ପରେ ଛତା କଥା କଲେଜରେ ମନେ ପଡ଼ିଲା । କ୍ଲାସ ଗୁଡ଼ି ଛତାପାଇଁ ଷ୍ଟେସନ ଆସିଲି । ଅନେକ ଖୋଜା ଖୋଜି କଲି କିନ୍ତୁ ଛତା ଆଉ ପାଇଲିନାହିଁ । ମୁଁ ମନେ ମନେ ଭାବିଲି ଘରେ ଆଜି ଖୁବ୍ ଗାଳି ଶୁଣିବାକୁ ପଡ଼ିବ । ମୁଁ ଆଜି ଘଡ଼ିରେ ଚାବି ଦେବାକୁ ଭୁଲିଗଲି । ବର୍ଷା ଯୋଗୁ ଦୁଇଦିନ ହେଲା ମୁଁ ଗାଧୋଇ ନାହିଁ । ଛତାପାଇଁ ୨ଟି ପିରିୟଡ଼ କ୍ଷତି ହେଲା । କଣ କରିଯାଏ ।

କ୍ଲାସ ଶେଷହେବା ପରେ ଚା ଖାଇବାକୁ କିଷ୍ଟୋ ହୋଟେଲକୁ ଗଲି । ଗୋଟିଏ ଚା, ଗୋଟିଏ ରସଗୋଲା ଏବଂ ଗୋଟିଏ ସିଙ୍ଗଡ଼ା ଖାଇଲି । ୬୫ ପଇସା ପଡ଼ିଲା । ଚା ଖାଇ ଟାଉନ ଆଡ଼କୁ ବାହାରି ପଡ଼ିଲି ।

ଘଣ୍ଟାରେ ପ୍ରଦୀପ ସହିତ ଦେଖା ହେଲା । ପ୍ରଣବ ଜିଲ୍ଲା ଲାଇବ୍ରେରୀରୁ ବହି ଫେରାଇ ଦେଇ ଆସୁଥିଲା । ମୁଁ ତାକୁ ସଙ୍ଗରେ ଆଣିଲି । ବଜାରରେ ମୁଁ ମୋର ଖରାପ ହୋଇଯାଇଥିବା କଲମଟା ଠିକ୍ କରାଇଲି । ତାପରେ ଗୋଟିଏ ଖାତା କିଣିଲି । ଖାତା କିଣି ଗୋଲକଗଞ୍ଜ ବସ୍‌ରେ ଉଠିଲି । ମୁଁ ଟ୍ରେନରେ ଯାଇଥାନ୍ତି । କିନ୍ତୁ ହୀରାଲାଲ ଆଗରୁ ଯାଇଛୁ, ସେଥିପାଇଁ ବସ୍‌ରେ ଗଲି, ଅବଶ୍ୟ ପ୍ରଣବକୁ ଅଳ୍ପ ଦୁଃଖ ଦେଇ ।

ଅପରାହ୍ଣରେ ହୀରାଲାଲ ଆସିଲା । ମୁଁ ଏବଂ ହୀରାଲାଲ ଅଳ୍ପ ବୁଲାବୁଲି କଲୁ । ହୀରାଲାଲ ଘରକୁ ଚାଲିଗଲା, ମୁଁ ସାଇକେଲ ନେଇ ଗୋପାଳ ଘରକୁ ଗଲି । ଗୋପାଳର ଗୋଡ଼ ଫୁଲି ଯାଇଥିଲା । ସେ ନିଜର ସାଇକେଲଟା ଦେଲା । ଆମେ ସାଇକେଲ ଚଢ଼ି ଚାଲି ଆସିଲୁ । ଗଣେଶ ଦା'ଙ୍କ ସହିତ ଦେଖାହେଲା । ମୁଁ ଏବଂ ଗୋପାଳ କରଦା'ଙ୍କ ଘରକୁ ଗଲୁ । କରଦା' ଆଜି ଘରେ ଥିଲେ । କରଦା' ଚା, ବିସ୍କୁଟ ଖୁଆଇଲେ । ସାଢ଼େ ସାତ ବାଜିଲା । ମୋର ଭୟ ହେଲା ମା ଆଜି ନିଶ୍ଚୟ ଗାଳିଦେବ । କିନ୍ତୁ ଭଗବାନଙ୍କ କୃପାରୁ କିଛି ଗାଳି ଦେଲାନାହିଁ । ଛତା କଥା ଶୁଣି, ଛତାପାଇଁ କିଛି ଗାଳି ଦେଲା । ରାତିରେ ସ୍ୱପ୍ନଦୋଷ ହେଲା ।

।। ୨୦ ଅଗଷ୍ଟ ୭୯ : ବୁଧବାର ।।

୭ଟାରେ ଉଠିଲି । ଆଜି ଭଲଭାବରେ ଗାଧୋଇଲି । ଦୁଇଦିନ ନ ଗାଧୋଇ-ଥିବାରୁ, ଏବଂ ମୋର ସ୍ୱପ୍ନଦୋଷ ହୋଇଥିବାରୁ ମୋର ଅଣ୍ଡରଓ୍ୱାରରୁ ଅତି ଦୁର୍ଗନ୍ଧ ହୋଇଛି ।

ଆଜି ଖୁବ୍ ଦୁର୍ବଳ ଦୁର୍ବଳ ଲାଗୁଛି । କାମଭାବ ନାହିଁ । ମନ ଭଲ ଲାଗୁନାହିଁ । ଡେରି ହେବାରୁ ଆଜି ଅଯମୀସ୍ଙ୍କ କ୍ଲାସ କରି ପାରିଲିନାହିଁ । ଆଜି କାଲି, କ୍ଲାସରେ ସବୁ ମନଯୋଗ ଦେଇ ଶୁଣୁନାହିଁ । କେତେବେଳେ ଅଧ୍ୟାପକ କ୍ଲାସରୁ ଯିବେ ଏକଥା ଭାବୁଥାଏ । ନିଜକୁ ଖୁବ୍ ହୀନ ହୀନ ଲାଗୁଥାଏ । ଅନର୍ସ ଛାଡ଼ିବାରୁ ବି ଖୁବ୍ ଅବଶୋଷ ଲାଗୁଥାଏ । ଭାବଚନ୍ଦ୍ର କାମଟି କରି ହେଉ ନଥାଏ ।

ଛୁଟୀ ହେବାପରେ କୃଷ୍ଣା ହୋଷ୍ଟେଲକୁ ଆସୁ ଆସୁ ୨ଟା ବାଜିଲା । ଚା' ଖାଇ ହୀରାଲାଲ ପାଇଁ ଅପେକ୍ଷା କରିବାରେ ଲାଗିଲି । ୨।୫୦ରେ ହୀରାଲାଲ ଏବଂ ଶୈଳେନ୍ ଆସିଲେ । ହୀରାଲାଲ ଏବଂ ଶୈଳେନ୍‌କୁ ଖୁଆଇଲି, ବଜାରକୁ ଗଲି । ଯୁଗଲ ଦା'ର ପ୍ୟାଣ୍ଟ ଆଣିଲି । ମୁଁ, ହୀରାଲାଲ, ଗୋବିନ୍ଦ ଏବଂ ଶୈଳେନ୍ ଗୋଟିଏ ବସ୍‌ରେ ଆସିଲୁ ।

ଆଜି ଦୁପୁରୁ ଚାରିଟା କରି ସାରାଦିନ ବର୍ଷା ହେଉଅଛି । ମୁଁ କଲେଜରୁ ଆସିବା ପରେ ରାମ ପ୍ରସାଦ ଧୋବାକୁ ଲୁଗା ଜାମା ଇସ୍ତ୍ରୀ କରିବାକୁ ଦେଇଆସିଲି । ସେଠାରୁ ବାରିକ ପାଖକୁ ଗଲି ବାଳ କାଟିବା ପାଇଁ । ମୋର ବାଳ ବର୍ତ୍ତମାନ ଖୁବ୍ ବଢ଼ିଯାଇଛି ।

ବାଲ କାଟି ଅସୁଛି, ରାସ୍ତାରେ ଗୋବିନ୍ଦ ଏବଂ ନନ୍ଦଲାଲ ସହିତ ଦେଖାହେଲ । ମୋତେ ସାଇକେଲରୁ ଓହ୍ଲାଇବାକୁ କହିଲେ । ଓହ୍ଲେଇଲି । ନନ୍ଦଲାଲର ସେଦିନ ଦେହ ଖରାପ ଥିଲା ଗୋଟିଏ ସପ୍ତାହ ପରେ ତାକୁ ଦେଖିଲି । ଆଜି ନନ୍ଦଲାଲ ଧୂବୁଲର ଯୋଗମାୟା ଆଶ୍ରମକୁ ଯାଇଥିଲା । ମା (ଯୋଗମାୟା) ମୁଁ କାହିଁକି ଆସୁନି ବୋଲି, ପଚାରୁଥିଲେ ।

ମୁଁ, ନନ୍ଦଲାଲ ଏବଂ ଗୋବିନ୍ଦ ଡାକ୍ତରଖାନା ଆଡ଼କୁ ଯାଉଛୁ, ସେତିକିବେଳେ ବର୍ଷା ଆରମ୍ଭ ହେଲା । ଆମେ ପରିବାର ନିୟୋଜନ କେନ୍ଦ୍ର ଭିତରେ ପଶିଲୁ । ବର୍ଷା ପାଇଁ ରାମଚନ୍ଦ୍ରନ ଏବଂ ତା ସହିତ ଆଉ ଗୋଟିଏ ପିଲା ଥିଲା, ସେ ମଧ୍ୟ ସେଠାକୁ ଆସିଲା । ଆମେ ଲୁପ୍ ବିଷୟରେ ଥଟ୍ଟା ମଜା ଆରମ୍ଭ କଲୁ । ଆମେ ଫେରୁଛୁ, ଏତିକିବେଳେ ଦେଖିଲୁ, ପ୍ରଣବ ଏବଂ ଗୋପାଳ ଆସୁଛନ୍ତି । ଆମେ ସମସ୍ତେ ମିଶି ପୁଣି ଫାର୍ମ ଆଡ଼କୁ ବୁଲିବାହାରିଲୁ ।

କରଦା'ଙ୍କ ଆଡ଼େ ଗଲୁ । ଜିଲ୍ଲା ଅଫିସରେ ସେ ବସିଥିଲେ । ଆମ ମାନଙ୍କର କ୍ଲବ୍ କେମିତି ଚାଲୁଛି ବୋଲି ପଚାରିଲେ ।

ଆଜି ରାଷ୍ଟ୍ରପତି କିଏ ହେବ ତାହା ଜଣାପଡ଼ିବ । ୧୫ ଜଣଙ୍କ ମଧ୍ୟରେ ପ୍ରଧାନ ପ୍ରଧାନ ସବୁ ହେଲେ ଭି· ଭି· ଗିରି, ସଞ୍ଜୀବ ରେଡ୍ଡୀ, ଚନ୍ଦ୍ରାମଗନ୍ ଇତ୍ୟାଦି । ଏହି ବିଷୟରେ, ମାନେ, କିଏ କାହିଁକି ଜିତିବେ ଆମମାନଙ୍କ ଭିତରେ ଖୁବ୍ ଯୁକ୍ତି ତର୍କ ଲାଗିଲା । ପ୍ରଣବ ମୋତେ 'ଦେଶର ଶତ୍ରୁ' କହିଲା । ମୋର ତା ଉପରେ ଖୁବ୍ ରାଗ ହେଲା । ୭ଟା ବାଜିଲା । ମୁଁ ଚାଲି ଆସିଲି ।

ବର୍ତ୍ତମାନ ୮ଟା ବାଜିଛି । ମୁଁ ବସିବସି ଡାଇରୀ ଲେଖୁଛି । ବର୍ତ୍ତମାନ ଖବର ଦେଖି ବୁଝିହେଲା ଏ ଗିରି ଜିତିବ । ମୋର ନିକଟରେ ଅଭୟ ମାଷ୍ଟର ବସିଛନ୍ତି । ମୋର ଗ୍ରେଟଭାଇମାନଙ୍କୁ ପଢାଉଛନ୍ତି । ରାଷ୍ଟ୍ରପତି ପଦରେ ଖୁବ୍ ଅଳ୍ପ ଭୋଟର ପାର୍ଥକ୍ୟରେ ଭି· ଭି· ଗିରି ଜିତିଲେ । ରାତିରେ ମୋର ଆଜି ସ୍ୱପ୍ନଦୋଷ ହେଲା । ୫ ଦିନ ଧରି ଲାଗ୍ ଲାଗ୍ ସ୍ୱପ୍ନଦୋଷ ହେଉଅଛି ।

॥ ୨୧ ଅଗଷ୍ଟ ୬୯ : ଗୁରୁବାର ॥

ଆଜି ଦିନଟି ଭଲଭାବରେ ଯାଇଛି । ହାଟ ଅଛି ବୋଲି ହୀରାଲାଲ କଲେଜକୁ ଆସିନାହିଁ । ଆଉ ଦେଖାବି ହୋଇନାହିଁ ।

ଆଜି କ୍ଲାସ ଛୁଟି ପରେ ମୁଁ ଏବଂ ଗୋବିନ୍ଦ ଆଶ୍ରମ ବାହାରିଲୁ । କିନ୍ତୁ ମା' (ଯୋଗମାୟା)ଙ୍କ ସହିତ ରାସ୍ତାରେ ଦେଖା ହେଲା । ମା ମୋତେ ଅନେକ ଦିନ ଧରି ଆଶ୍ରମ କାହିଁକି ଯାଇନି ବୋଲି ପଚାରିଲେ । ଆଉ ଆମକୁ କାଲି ଯିବାକୁ ଆଦେଶ

କଲେ । ତା'ପରେ ଜିଲ୍ଲା ଲାଇବ୍ରେରୀକୁ ଗଲୁ । ରୁଷୀୟ ଲେଖକ ଗର୍କିଙ୍କର ଲେଖା 'ମା' ଉପନ୍ୟାସ ଆଣିଲି । ଉପନ୍ୟାସ ଯେତେବେଳେ ମୁଁ ଇସୁ କରୁଅଛୁ, ଏତିକିବେଳେ ଜଣେ ପିଲା ମୋତେ ପଚାରିଲା, ଆପଣ ଏ ବହିଟି କୋଉଠୁ ଆଣିଛନ୍ତି । ମୁଁ କହିଲି ଏ ଜଣକର ଆଲମାରୀରୁ ନେଇଛୁ । ସେ କହିଲା, ବହିଟି ପଢ଼ିବା ପରେ ମୋତେ ଦେବେ । ସେ ପିଲାଟାର ରୋଲ ନମ୍ବର—୧, ୨ୟ ବାର୍ଷିକ ଶ୍ରେଣୀରେ ପଢ଼େ । ମୁଁ କହିଲି, "ଆଗ୍ର ମୁଁ ପଢ଼ିବା ପରେ ଆପଣଙ୍କୁ ଦେବି ।" ଏ ପ୍ରକାରରେ ସେ ପିଲାଟି ସହିତ ଚିହ୍ନା ପରିଚୟ ହେଲା ।

ଏମିତି କରୁ କରୁ ଟ୍ରେନ ସମୟ ହେଲା । ମୁଁ ଏବଂ ଗୋବିନ୍ଦ ଗୋଟିଏ ସାଇକେଲରେ ଉଠି ଷ୍ଟେସନ ଆସିଲୁ । ଆଜି ଟ୍ରେନରେ ଗୋଲକଗଞ୍ଜ କଲେଜର ଗ୍ରୁପ ଥିବା କୌଣସି ପିଲା ନଥିଲେ । ମୁଁ ବିନା ଟିକେଟରେ ଗଲି । କିନ୍ତୁ ମୋର ଖୁବ୍ ଭୟ ହେଉଥିଲା ।

ଆଜି ଆଉ କାହା ସହିତ ଦେଖା ହୋଇନାହିଁ । ଆସ୍ତେ ଆସ୍ତେ ପ୍ରାୟ ରାତି ହୋଇଗଲା । କେବଳ ଗୋପାଳ ସହିତ ରାସ୍ତାରେ ଦେଖାହେଲା ।

୮।୪୫ରେ ଶୋଇ ପଡ଼ିଲି । ଆଜି ରାତିରେ ସ୍ୱପ୍ନଦୋଷ ହୋଇନି ।

|| ୨୨ ଅଗଷ୍ଟ ୧୯୬୯ : ଶୁକ୍ରବାର ||

ପ୍ରତିଦିନର ସମୟରେ ଉଠିଲି । ନାମ, ଜପ, ବ୍ୟାୟାମ ଆଦି କିଛି ହେଉନାହିଁ । ସକାଳେ ଆଜି କାଲି ସବୁଦିନ ଭଳି କିଛି ପଢ଼ାପଢ଼ି ହେଉନି ।

ଗାଁଓରମଲ (୨-ଦାଦା) ମୋତେ କହିଲେ, ପ୍ରଣବ ଘରଠାରୁ ଏକ ଠିକଣା ପାଇଁ, "ନବଭାରତ ଟାଇମସ୍" ପତ୍ରିକା ନେଇ ଆସିବାକୁ । ମୁଁ ପ୍ରଣବର ଘରକୁ ଗଲି । ପ୍ରଣବ କଲେଜ ଯିବାକୁ ପ୍ରସ୍ତୁତ ହେଉଥିଲା । ପ୍ରଣବ କହିଲା, ପତ୍ରିକା ଭିତରେ ଅଛି, କାଲି ନେବୁ । ପ୍ରଣବ ସହିତ ବସଷ୍ଟାଣ୍ଡ ପର୍ଯ୍ୟନ୍ତ ଆସିଲି । ପ୍ରଣବକୁ ଘରେ ବସାଇ ମୁଁ ଗାଧୋଇବାକୁ ଗଲି । ଗାଧୁଆ ସାରି, ଖାଇପିଇ ଷ୍ଟେସନ ଆଡ଼କୁ ଗଲୁ । ୯ଟାରେ ଟ୍ରେନ ଛାଡ଼ିଲା । ଆମର 'ହିନ୍ଦି'ର 'ପ୍ରଫେସର' ସେଇ ଡବାରେ ଥିଲେ । ନନ୍ଦଲାଲ ସହିତ ଦେଖାହେଲା । ଶ୍ୟାମଲାଲ ସହିତ ଟ୍ରେନରେ ଦେଖା ହେଲାନାହିଁ ।

୯।୪୫ରେ ଧୁବୁଡ଼ିରେ ପହଞ୍ଚିଲି । କିନ୍ତୁ ମୋର କ୍ଲାସ ଆଜି ସାଢ଼େ ୧୧ଟାରେ । ନିଷ୍ଠା ହୋଟେଲରେ କିଛି ସମୟ ପାଇଁ ମୁଁ ଏବଂ ଉପେନ ବସିଲୁ । ତାପରେ କିଛି ସମୟ ରୂପା ଲାଇବ୍ରେରୀରେ କଥାବାର୍ତ୍ତା କଲି । ସେଠାରୁ କଲେଜକୁ ଗଲି । ଖୁବ ପେଟ

ବନ୍ଧୁଛ । ଝାଡ଼ା ଗଲି । ତାପରେ ଦେହ ଭଲ ଲାଗିଲା ।

ହୀରାଲାଲ ସହିତ ଦେଖାହେଲା । ସେ ବସ୍‌ରେ ଆସିଥିଲା । କ୍ଲାସ ସବୁ କଲି । କିନ୍ତୁ ଆଗହ ନାହିଁ । ଶେଷ ଦୁଇଟା ପିରିଅଡ଼ରେ ଝାଲ ବନ୍ଦ ଲାଗିଥିଲା ।

୧୨।୧୫ ମିନିଟରେ ଲିଜର ଥିଲା । ମୁଁ, ଆମର କ୍ଲାସର କମଲ ସିଂହର ସାଇକେଲ ନେଇ ବିଷ୍ଣୁ ହୋଷ୍ଟେଲକୁ ଚା ଖାଇବାକୁ ଗଲି । ହୀରାଲାଲ ମୋ ସାଥିରେ ଗଲା ।

୨।୩୦ରେ ଛୁଟି ହେଲା । ମୁଁ ଏବଂ ହୀରାଲାଲ ଗୋଟିଏ ବସରେ ଗଲୁ ।

ସାଢେ ୫ଟାରେ ମୁଁ, ହୀରାଲାଲ ଆଉ ଉପେନ, ଉପେନର ପ୍ରେମିକା କୁମୁଦିନୀର ଘରକୁ ଗଲୁ । ଗଲାବେଳେ ମୁଁ ଉପେନକୁ ବସେଇ ନେଇଥିଲି । ଗୋଲକଗଞ୍ଜରୁ ୪ ମାଇଲ ଦୂର । ଖୁବ୍ ଥଟ୍ଟା ମଜା କରି ଗଲୁ । କୁମୁଦିନୀର ଘର ଆଗରେ ସମସ୍ତଙ୍କ ଆଗରେ ସାଇକେଲ ଆକ୍‌ସିଡ଼େଣ୍ଟ ହେଲା ଏବଂ ଉପେନ କାଦୁଅରେ ନସର ପସର ହୋଇଗଲା । ମୋର କିଛି ହୋଇନି । ମୁଁ ଖୁବ୍ ଜୋରରେ ହସିବାରେ ଲାଗିଲି ।

କୁମୁଦିନୀର ଘରକୁ ଗଲି । ଚା ଫା' ଖାଇଲୁ । ୬ଟାରେ ପୁଣି ଫେରିଲୁ । ଏଥର ହୀରାଲାଲ ଉପେନକୁ ବସାଇଲା ।

ଆସୁ ଆସୁ ସନ୍ଧ୍ୟା ହୋଇଗଲା । ଉପେନ ଚା ଖୋଇବାକୁ ଚାହିଁଲା । ମୁଁ କହିଲି କାଲି ଧୂରୁଆରେ ଖୋଇବୁ । ଉପେନକୁ ବସରେ ଉଠାଇ ଦେଲୁ । ସେ ଚାଲିଗଲା ।

ସନ୍ଧ୍ୟାପରେ ଆମ ଘରକୁ ପ୍ରଧାନି (ଶ୍ରୀ ଭୁବନ ଚନ୍ଦ୍ର ପ୍ରଧାନି) ଆସିଲେ । କଥା ବାର୍ତ୍ତା କଲି । ପଢ଼ାପଢ଼ି ହେଉନି । ରାତିରେ ସ୍ୱପ୍ନଦୋଷ ହେଲା । ଶରୀର ଖୁବ୍ ଦୁର୍ବଳ ହୋଇଯାଇଛି । କିନ୍ତୁ କଣ କରିବ ?

॥ ୨୩ ଅଗଷ୍ଟ ୧୯୬୯ : ଶନିବାର ॥

୬।୪୫ରେ ଉଠିଲି । ଆଜି ସାଓର ମଲ୍ଲିକଙ୍କ ଜର ହୋଇଛି । ମୁଁ ସାଓର ମଲ୍ଲିଙ୍କ ପାଖରେ ବସିଛି ଏତିକି ବେଳେ ହୀରାଲାଲ ଆସିଲା । ମୁଁ କହିଲି ମୁଁ ଅଧଘଣ୍ଟା ପରେ ଯିବି । ବଡ଼ବାଜାର ମଟର ଧୂରୁଆ ଯାଉଥିଲା । ମୁଁ ସେଥିରେ ଯାଇ ବସିଲି । ଧୂରୁଆ ଟାଉନରେ ଓହ୍ଲାଇଲି । ସାଓର ମଲ୍ଲିର ଔଷଧ ନେଇ କଲେଜ ଆଡ଼କୁ ଚାଲିଲି । ଅଳ୍ପ ଅଳ୍ପ ଟୁପଟାପ ବର୍ଷା ହେଉଅଛି । ମୁଁ ରିକ୍‌ସାରେ ଗଲି । ବିଷ୍ଣୁ ହୋଷ୍ଟେଲରେ ହୀରାଲାଲ, ବିଜୟ ଛିଡ଼ା ହୋଇଥିଲେ । ସେ ଦୁଇଜଣ ଅନ୍ୟ ରିକ୍‌ସାରେ ଆସିଲେ ।

କ୍ଲାସ ଭଲଭାବରେ କଲି । ୧।୪୫ରେ ଛୁଟି ହେଲା । ବିଷ୍ଣୁ ହୋଷ୍ଟେଲରେ ଉପେନ ଚା ଖୁଆଇଲା । ତାପରେ ମୁଁ, ହୀରାଲାଲ ଆଉ ଉପେନ ରୂପାଳୀ ହଲକୁ ଗଲୁ ସିନେମା ଦେଖିବାକୁ । "ତୁମ୍ ସେ ଆଚ୍ଛା କୌନ୍ ହୈ" ଚାଲିଥିଲା । ହୀରାଲାଲ ସିନେମା ଦେଖାଇଲା । ସିନେମା ଏକ ପ୍ରକାର ଭଲ ଥିଲା ।

ଯେତେବେଳେ ଷ୍ଟେସନ ପାଖକୁ ଆସିଲି ସେତେବେଳେ ଗାଡ଼ି ଛାଡ଼ିଦେଲା । ଆମେ ଦୌଡ଼ି ଦୌଡ଼ି ଗାଡ଼ି ଧରିଲୁ । ମୋ ପ୍ୟାଣ୍ଟଟା ଛିଣ୍ଡିଗଲା ଗାଡ଼ି ଉଠିବାର ସମୟରେ ।

ନନ୍ଦଲାଲ ଆଜି ଆଶ୍ରମ ଯାଇଥିଲା । ମା' ମୋ କଥା ପଚାରିଥିଲେ । ବୁଧବାର ଆମମାନଙ୍କୁ ଆଶ୍ରମକୁ ଯିବାକୁ କହିଲେ ଝୁଲଣ ଉତ୍ସବରେ ଏବଂ ଅରୁଣଙ୍କୁ ମଧ୍ୟ ଯିବା ପାଇଁ କହିଲେ ।

ମୁଁ ଗୋଟିଏ ମିଛ କଥା କହିଲି । ଘରେ କହିଲି ଯେ ମୁଁ ସିନେମା ଦେଖିନି । ଆଉ ଗୋଟିଏ ମିଛକଥା କହିଲି ଯେ ପ୍ୟାରେଡ଼ କରୁ କରୁ ଡେରି ହେଲା ! ସେଥିପାଇଁ ଟ୍ରେନରେ ଆସିଲି । ଗୋଟିଏ ମିଛକଥା କହିବା ପାଇଁ ବହୁତ ମିଛକଥା କହିବାକୁ ହୁଏ । ସ୍ୱପ୍ନଦୋଷ ହେଲା । ଶରୀର ଖୁବ୍ ଦୁର୍ବଳ ଦୁର୍ବଳ ଲାଗୁଛି । କାଲି ଶୋଇବାର ଆଗେ ପାଣି ପିଇଥିଲି, କିନ୍ତୁ ଆସନ କରିନଥିଲି ।

॥ ୨୪ ଅଗଷ୍ଟ ୧୯୬୯ : ରବିବାର ॥

ଆଜି ସାରାଦିନ ଟୁପ୍‌ଟାପ୍ କରି ବର୍ଷା ହେଉଛି । ମୁଁ ଆଜି ଏପର୍ଯ୍ୟନ୍ତ (୩।୪୫ ଅପରାହ୍ନ) ଘରେ ବସିଛି । ବର୍ତ୍ତମାନ ବର୍ଷା ଅଳ୍ପ କମିଛି । ମୁଁ ଆଜି ଘରର ବାହାରେ ଗୋଡ଼ କାଢ଼ିନାହିଁ ।

ଖରାବେଳେ 'ମା' ଉପନ୍ୟାସର କିଛି ପୃଷ୍ଠା ପଢ଼ିଛି । ଅଧଘଣ୍ଟା ମାତ୍ର ଶୋଇଲି । ବିଶେଷ କିଛି ଏପର୍ଯ୍ୟନ୍ତ ଘଟିନି । ଆଜି ବଡ଼ ଦୁର୍ବଳ ଲାଗୁଛି ।

ସନ୍ଧ୍ୟା ସମୟରେ ଖାଇପିଇ ବାହାରକୁ ବାହାରିଲି । ପ୍ରଥମେ ଗଲି ପ୍ରମୋଦ ଦୋକାନକୁ । ସେଠାରେ ଅଜୟ ସହିତ କଥାବାର୍ତ୍ତା କରୁଛି, ଏତିକିବେଳେ ପ୍ରଣବ ଏବଂ ଗୋପାଳ ପୂର୍ବଦିଗରୁ ଆସିଲେ ସାଇକେଲରେ ।

ମୁଁ, ପ୍ରଣବ, ଗୋପାଳ କଥାବାର୍ତ୍ତା କରୁ କରୁ ଗୋବିନ୍ଦର ଦୋକାନ ପର୍ଯ୍ୟନ୍ତ ଆସିଲୁ । ଗୋପାଳ ଏବଂ ପ୍ରଣବ କାଲି କରବାବୁଙ୍କ ଘରକୁ ଯାଇଥିଲେ । ସେମାନେ କହିଲେ କରବାବୁ ଆମକୁ ଏଡ଼ାଇ ଏଡ଼ାଇ ଚାଲୁଛନ୍ତି । ମୋର କିନ୍ତୁ ଏକଥା ବିଶ୍ୱାସ ହେଲାନି । ଗୋବିନ୍ଦ, ନନ୍ଦଲାଲ, ଗଣେଶଦା (କଲିକତା) ଆଦିଙ୍କ ସହ କଥାବାର୍ତ୍ତା କରୁ କରୁ ପ୍ରାୟ ୮।୪୫ ହେଲା । ସ୍ୱପ୍ନଦୋଷ ହୋଇନି ।

॥ ୨୫ ଅଗଷ୍ଟ ୧୯୬୯ : ସୋମବାର ॥

ମୁଁ ଏବଂ ହୀରାଲାଲ ଗୋଟିଏ ବସରେ ଧୁବୁରିକୁ ଗଲୁ । ଟ୍ରେନରେ ଗଲେ ଆରାମ ଲାଗେ କିନ୍ତୁ, ଟ୍ରେନ ଆଜି ପାଇନି ।

କ୍ଲାସ କଲି । ଖୁବ୍ ଜୋର ବର୍ଷା ହେଉଥିଲା । ୪ଟାରେ ଛୁଟି ହେଲା । ମୁଁ ଏବଂ ଉପେନ ବଜାରକୁ ଗଲୁ । ମୁଁ ହଵାଇ ଚପଲ କିଣି ଆଣିଲି । ୬ଟଙ୍କା ଏବଂ କେତେ ପଇସା ପଡିଲା ।

ସମୟ କାଟିବା ପାଇଁ ଗୋବିନ୍ଦ ପାଖକୁ ଗଲି । ବହୁତ କଥାବାର୍ତ୍ତା ହେଲା । ଆଜି ସ୍ଥିତ ଲିପି ସଂଶୋଧନ କରିବାକୁ ଚେଷ୍ଟା କଲି । ଆଜି ପଢିବା ପାଇଁ ଅଳ୍ପ ଅଳ୍ପ ମନ ହୋଇଛି । ସ୍ୱପ୍ନ ଦୋଷ ହୋଇନି ।

॥ ୨୨ ଅଗଷ୍ଟ ୧୯୬୯ : ମଙ୍ଗଳବାର ॥

ଅଳ୍ପ ସମୟ ପାଇଁ ମୁଁ ଆଜି ଟ୍ରେନ ଧରି ପାରିଲି ନାହିଁ । ହୀରାଲାଲ ଟ୍ରେନରେ ଗଲା । ନନ୍ଦଲାଲ, ଜଗଦ୍ଦୀପେନ୍ଦ୍ରର ମୋର ଅବସ୍ଥା ହେଲା ।

ଆମେ ବସରେ ଗଲୁ । ମୁଁ ଏବଂ ଜଗଦ୍ଦୀପେନ୍ଦ୍ର ଟଙ୍କାଏ ଜାଗାରେ ୬୦ ପଇସା ଦେଲୁ ।

ଖୁବ୍ ବର୍ଷା ହେଉଥିଲା । ୧୦।୪୫ରେ କ୍ଲାସ । କଲେଜରେ ହୀରାଲାଲ ସହିତ ଦେଖାହେଲା । ଛୁଟିପରେ ମୁଁ ଓ ହୀରାଲାଲ ଗୋଟିଏ ବସରେ ଆସିଲୁ । ଉପେନ ଥିଲା । ବସଟି ଗୌରୀପୁରରୁ ଅଳ୍ପବାଟ ଯାଇ ଖରାପ ହୋଇଗଲା ।

ମୁଁ, ହୀରାଲାଲ ଅନେକ ସମୟ ବୁଲାବୁଲି କଲୁ । ତାପରେ ଆଉ ଗୋଟିଏ ବସ୍‌ରେ ଆସିଲୁ ।

ଅପରାହ୍ନରେ ମୁଁ, ହୀରାଲାଲ, କମଲ, ନନ୍ଦଲାଲ ନଦୀକୂଳକୁ ବୁଲିବାକୁ ଗଲୁ । ସ୍ୱପ୍ନଦୋଷ ହେଲା ।

॥ ୨୭ ଅଗଷ୍ଟ ୧୯୬୯ : ବୁଧବାର ॥

ଟ୍ରେନରେ ହୀରାଲାଲ ଏବଂ ମୁଁ ଏକା ସାଥିରେ ଗଲୁ । ସେକେଣ୍ଡ କ୍ଲାସର କମ୍ପାର୍ଟମେଣ୍ଟରେ ଉଠିଲୁ ବିନା ଟିକେଟରେ । ପ୍ରଣବ, ନନ୍ଦଲାଲ, ଅରୁଣ ସବୁଥିଲେ । ଆଜି ସଂସ୍କୃତ ଦିବସ । ସେଥିପାଇଁ ୧୨।୧୫ପରେ କ୍ଲାସ ହେଲାନି । ଫଙ୍କସନ୍ ହେଲା । ଦ୍ୱିତୀୟ ଧାଡ଼ିରେ ହୀରାଲାଲ ପାଖରେ ବସିପଡ଼ିଲି ।

ହିନ୍ଦୁସ୍ଥାନୀ ହୋଟେଲରେ ମୁଁ, ହୀରାଲାଲ ଏବଂ ସୁବଳ ଦା ଗ୍ରୁ ଖାଇଲୁ । ଦାମ୍ ମୁଁ ଦେଲି ।

ଆଶ୍ରମର ମା ଅନେକ କେତେ ଜଣଙ୍କୁ ଓ ମୋତେ ଆଶ୍ରମ ଯିବାକୁ କହୁଛି । ମୁଁ ଏବଂ ସୁବଳ ଦା ଆଜି ଗଲୁ । ମୁଁ ମନ୍ତ୍ର ଟନ୍ତ୍ର ଦିଆ ଯେ ଗୁଡ଼ି ଦେଇଛି ଏଇଟା ମା (ଯୋଗମାୟା ଦେବୀ) ଜାଣି ପାରିଥିଲେ । ବନ୍ଦ କରିବାଟା ଖୁବ୍ ଖରାପ ବୋଲି ମା ଆଜି

ମୋତେ କହିଲେ । ଅଧିକନ୍ତୁ ୧୦।୧୨ଟର ଜପ କରିବାକୁ କହିଲେ ଏବଂ ମୋର ଶରୀର, ମନ ବର୍ତ୍ତମାନ ଖରାପ ଲାଗିବାର କାରଣ ୪ଇଟା । ମା (କାଳୀ) ତାଙ୍କୁ (ଯୋଗମାୟା) ଧ୍ୟାନରେ କହିଛନ୍ତି ଯେ ମୁଁ ମନ୍ତ୍ରପାଠ ବନ୍ଦ କରିଦେଇଛୁ ।

ମୁଁ କହିଲି, ମୋ ମନରେ ବର୍ତ୍ତମାନ ଭକ୍ତି ନାହିଁ । କିନ୍ତୁ ସେ କହିଲେ ଯେ ତୁମ ମନରେ ଭକ୍ତି ଅଛି । ତାଙ୍କୁ କହିଲି ମୁଁ କାଲି ଆସିବି ।

ସାଢ଼େ ୩ଟାର ବସରେ ଆସିଲି । ଅପରାହ୍ଣରେ ହୀରାଲାଲ ପାଖକୁ ଗଲି । ତାଙ୍କ ସହିତ ବୁଲିବାକୁ ଗଲି । ପ୍ରଣବ ଏବଂ ନନ୍ଦଲାଲ ସହିତ ରାସ୍ତାରେ ଦେଖାହେଲା । କରଦାଙ୍କ ସହିତ ଦେଖାହେଲା । ଗୋବର ଉପରେ ଗୋଡ଼ ପଡ଼ିବାରୁ ମୁଁ ଠସ୍ କରି ଧଡ଼ିଗଲି ।

ଆମ ଘରକୁ ପ୍ରଣବ, ଗୋପାଳ, ହୀରାଲାଲ, ରତନଶାହା ଆସିଲେ । ମା, ବାବା ଖାଇବା ପାଇଁ ଚଲାଚଲି କରିବାକୁ ଲାଗିଲେ । ସେମାନେ ଯିବାର ପରେ ସେମାନଙ୍କୁ (ମା'ଙ୍କୁ) ଖୁବ୍ ଧମକ ଲଗାଇ ଦେଲି ଏବଂ ମୋର ଭୀଷଣ ରାଗ ହେଲା । ରାଗ ଦଶାରେ ଅଳ୍ପ ଖାଇ ଉଠି ପଡ଼ିଲି ।

"ଶ୍ରୀ ଶ୍ରୀ ଯୋଗମାୟା ଦେବୀର ଉପଦେଶାମୃତ" କିଛି ପଢ଼ିଲି । ସ୍ୱପ୍ନଦୋଷ ହେଲାନାହିଁ । କାରଣ ଶୋଇବା ବେଳେ ମା'ଙ୍କର ନାମ ନେଇଥିଲି ।

॥ ୨୮ ଅଗଷ୍ଟ ୧୯୬୯ : ଗୁରୁବାର ॥

ଆଜି ୧୨।୧୫ରୁ କ୍ଲାସ । ମୁଁ ଖାଇପିଇ ସାଢ଼େ ୧୦ଟା ବସରେ ଆଶ୍ରମରେ ଗଲି । ବଡ଼ଭାଇ ଏବଂ ମୁଁ ଗୋଟିଏ ବସରେ ଯାଇଥିଲୁ । ଓହ୍ଲାଇବା ସମୟରେ ମୁଁ ଭାବିଲି ମୋ ଭଡ଼ା ଯୁଗଳଦା ଦେଇଛି, ମୁଁ ଓହ୍ଲାଇଯିବା ଆରମ୍ଭ କଲି । ହେଲ୍‌ପର ମୋତେ ଡାକିଲା, "ଶୁଣ ! ଶୁଣ !" ମୋତେ ଖୁବ୍ ଖରାପ ଲାଗିଲା ଏବଂ ଲାଜ ଲାଗିଲା ।

୧।୪୫ରେ ଛୁଟି ହେଲା । ଆଜି ହୀରାଲାଲ କଲେଜ ଯାଇନି (ହାଃଟ ପାଇଁ) । ଆଜି ମୋ ଦେହ ଖୁବ୍ ବେଶୀ ଭଲ ଲାଗୁନି । ତପେନ, ସୁବଲ ଦା ଏବଂ ମୁଁ ଚା ଖାଇଲୁ । ମୁଁ ପଇସା ଦେଲି । ତାପରେ ମୁଁ ଏବଂ ସୁବଲଦା ଆଶ୍ରମ ଗଲୁ । ମା ଶୋଇଥିଲେ । ଆମେ ଅନେକ ସମୟ ଅପେକ୍ଷା କଲୁ । କିନ୍ତୁ ସେ ଉଠିଲେ ନାହିଁ ।

ସୁବଳ ଦା ଏବଂ ମୁଁ ହୁସେନର ଘରକୁ ଗଲୁ । (ହୁସେନ-ମୋର 'ମା' ଉପନ୍ୟାସ ମାଗି-ଥିଲା) । ୫ଟା ବସରେ ଚାଲି ଆସିଲି । ଚୂରନ ସହିତ ବୁଲିବାକୁ ଗଲି । ଗୋପାଳ ଏବଂ ପ୍ରଣବ ସହିତ ଦେଖା ହେଲା । ।

ପି. ୟୁ. ଶ୍ରେଣୀର ଗୋଟିଏ ପିଲାକୁ ଭଲପାଏ । ତାକୁ ସଂସ୍କୃତର ନୋଟ ଦେବାକୁ ଇଚ୍ଛାକଲି । ଆଜି ମନ୍ତ୍ରଜପ ୧୦।୨୦ଥର କଲି । ମନ ଗୋଟିଏ ପ୍ରକାର ଭଲ ଅଛି । ଶୋଇବାର ସମୟରେ ମା'ଙ୍କୁ ସ୍ମରଣ କରି ଶୋଇଲି । ସେଥିପାଇଁ ସ୍ୱପ୍ନଦୋଷ ହେଲାନି ।

॥ ୨୯ ଅଗଷ୍ଟ ୧୯୬୯ : ଶୁକ୍ରବାର ॥

ଟ୍ରେନରେ କଲେଜ ଗଲି । ହୀରାଲାଲ ଟ୍ରେନ ଧରି ପାରିନି, ସେଥିପାଇଁ ବସରେ ଆସିଲା । ।

କ୍ଲାସ କଲି । ଆଜି ଚା ଖାଇନି । ବଡ଼ବାସ ଟ୍ରକରେ ମୁଁ ଏବଂ ହୀରାଲାଲ ଗୌରିପୁର ପର୍ଯ୍ୟନ୍ତ ଆସିଲୁ । ତାପରେ ୨ଟା ବସରେ ମୁଁ, ପ୍ରଣବ ଏବଂ ହୀରାଲାଲ ଆସିଲୁ । ଆମେ ୧୦ ପଇସା କରି କମ କରି ଦେବାକୁ ଚାହିଁଲୁ । ସେ ନେଲାନି । ବସରେ ଖୁବ୍ ପାଟିହେଲା । ମୁଁ ମନେ ମନେ ଲଜ୍ଜା ପାଇଲି । ଏମିତି କାମ ଆଉ କରିବି ନାହିଁ । ମୁଁ ସବୁ ପଇସା ଦେଇଦେବାକୁ ହୀରାଲାଲ ଏବଂ ପ୍ରଣବକୁ ବାରମ୍ବାର କହିଲି । କିନ୍ତୁ ସେମାନେ ମାନିଲେ ନାହିଁ । ମୋର, ହୀରାଲାଲ, ପ୍ରଣବ ଉପରେ ସେଥିପାଇଁ ଖୁବ୍ ରାଗ ହେଲା । ସେମାନେ ମୋତେ ଖୁବ୍ ଭୀରୁ ଏବଂ କାପୁରୁଷ କହିଲେ । ମୁଁ ଅହିଂସା ନୀତିକୁ ପସନ୍ଦ କରେ । ହିଂସା ଚାହେଁନା ।

ଅପରାହ୍ଣରେ ବସଷ୍ଟାଣ୍ଡର ସେକ୍ରେଟାରୀ ରମେଶ ପାଖକୁ ଗଲି । ତାକୁ କହିଲି ଏଗୁଡ଼ା ଗୌରିପୁରର ପିଲାମାନଙ୍କର କଥା । ଆପଣ ଅଧ୍ୟକ୍ଷଙ୍କୁ ରିପୋର୍ଟ କରନ୍ତୁ ।

ଅପରାହ୍ଣରେ ମୁଁ, ପ୍ରଣବ, ହୀରାଲାଲ, ଗୋପାଳ, କମଳ ବୁଲିଲୁ । ବସଭଡ଼ା ନେଇ ଗଣ୍ଡଗୋଳ ପାଇଁ ଆଜି ସାରାଦିନ ଖୁବ୍ ଖରାପ ଲାଗୁଛି । ମୁଁ ଅନୁଶୋଚନା କରୁଛି କାହିଁକି ଏ କାମଟି କଲି । ହେ ଭଗବାନ ! ମୋର ମାନ ସମ୍ମାନ ରକ୍ଷାକର । ସ୍ୱପ୍ନଦୋଷ ହୋଇନି ।

|| ୩୦ ଅଗଷ୍ଟ ୧୯୬୧ : ଶନିବାର ||

୭ଟା ୧୫ ରେ ଉଠିଲି । ହାତ ମୁହଁ ଧୋଉ ଧୋଉ ୮ଟା ବାଜିଲା । ଟ୍ରେନ୍‌ରେ ଧୂବୁରି ଗଲି । ହୀରାଲାଲ୍ କଲେଜ ଯାଇନି ।

୯ଟା ୧୫ ରେ ମୋର କ୍ଲାସ୍ ଥିଲା । କ୍ଲାସ୍ କରି ପାରିଲି ନାହିଁ । ୧୦ଟାରୁ ଇଂରାଜୀ କ୍ଲାସ ଥିଲା, କଲି । କ୍ଲାସରେ ମନ ନ ଥିଲା । ସେଥିପାଇଁ କିଛି ବୁଝିଲି ନାହିଁ । ତାପରେ ୩ଟା ପିରିଅଡ୍ ଲିଜର୍ । ହଷ୍ଟେଲ୍‌କୁ ଗଲି । ସେଠାରେ କ୍ୟାରମ୍ ବୋର୍ଡ଼ ଖେଳିଲୁଁ । ଥିଲୁ, ମୁଁ, ଉପେନ୍ ଆଉ ଦୁଇଜଣ ପ୍ରି-ୟୁନିଭରସିଟି ଶ୍ରେଣୀର । କ୍ୟାରମ୍ ବୋର୍ଡ଼ ଖେଳୁ ଖେଳୁ ୧୨ଟା ବାଜିଲା । ତାପରେ କୃଷ୍ଣା ହୋଟେଲକୁ ଗଲି । ଉପେନ୍ ଘ୍ଟ ଖୁଆଇଲା ।

ଆଜି ରାଜନୀତି ବିଜ୍ଞାନ କ୍ଲାସ ହୋଇନି । ଅଧ୍ୟାପକ ନ ଥିଲେ । ଗୋପାଳ ସହିତ ଦେଖା କରିବାକୁ ଗୋପାଳର ଭଉଣୀର ଘରକୁ ଗଲି । ଗୋପାଳ ସହିତ "ଲଭ୍ ଇନ୍ ଟୋକିଓ" ଦେଖିଲି । ଗୋପାଳକୁ ମୁଁ ଦେଖାଇଲି । କମଳ ଥିଲା, ତାକୁ ମୁଁ ଦେଖାଇ ନାହିଁ । ଫିଲ୍ମଟା ଭଲ ଲାଗିଲା । ଆଶା ପାରେଖ ଏବଂ ଜୟ ମୁଖାର୍ଜୀ ଥିଲେ । ଟୋକିଓର ଅନେକ ଦୃଶ୍ୟ ଦେଖିଲି ଫିଲ୍ମରେ ।

ଟ୍ରେନ୍‌ରେ ମୁଁ, ଅଶ୍ୱିନୀ, ଗଣେଶଦା, କମଳ, ଗୋପାଳ ଓ ସ୍ୱପର୍ଟାମର ପିଲା (ଯାହାକୁ ମୁଁ ଭଲପାଏ) । ତାକୁ ମୁଁ ସଂସ୍କୃତର ନୋଟ ଦେବାକୁ ଇଚ୍ଛାକଲି ।

ଖାଇପିଇ କ୍ଲବ୍ ହାଉସ୍‌ରେ ମିଟିଂ କଲି । ହୀରାଲାଲ୍, ନନ୍ଦଲାଲ, ପ୍ରଣବ, ବାବୁରାମ, ଗୋପାଲ, ଗୋବିନ୍ଦ ଆଦି ସମସ୍ତେ ପ୍ରାୟ ଥିଲେ ।

ରାତିରେ ସ୍ୱପ୍ନଦୋଷ ହୋଇନି । କାରଣ ଆଜି କାଲି ଶୋଇବା ବେଳେ ମା (କାଳୀ)ର ନାମ ନେଇ ଶୁଏ । ଆସନ କରେ, ପାଣି ପିଏ ।

|| ୩୧ ଅଗଷ୍ଟ ୧୯୬୧ : ରବିବାର ||

ଆଜି ସକାଳ ୭ଟାରେ ନିଦରୁ ଉଠିଲି । "ମିରାକିଓରର" ଦୁଇଟା ଅଧ୍ୟାୟ ପଢ଼ିଲି । ଆଜି ମିଟିଂ ହେବାର ଥିଲା । କିନ୍ତୁ କେହି ଆସିଲେନି । ସକାଳେ ବର୍ଷା ହେଉଥିଲା । ୧୦ଟା ୪୫ ମିନିଟ୍‌ରେ ପ୍ରଣବ, ମୋର 'ପିଗିମାଲିଅନ୍'ର ନୋଟ୍ ନେଇ ଆସିଲା । ପ୍ରଣବ ସହିତ ବଜାର ଗଲି । ଗୋପାଳ ସହିତ ଦେଖା ହେଲା । ବର୍ଷା ଯୋଗୁ ଆଜି ସକାଳର ମିଟିଂ କ୍ୟାନ୍‌ସଲ୍ ହେଲା ।

॥ ୬୭ ॥

୧୧ଟା ଖଣ୍ଡେ ବେଳେ ଖାଇପିଇ ମୋ ୨ ବର୍ଷର ଆଗର ଡାଇରୀ ପଢ଼ିବା ଆରମ୍ଭ କଲି । ସେଇ ଘଟଣା ସବୁ ପଢ଼ି ମନରେ ଖୁବ୍ ଆନନ୍ଦ ଲାଗିଲା । ପଢ଼ୁ ପଢ଼ୁ ନିଦ ଲାଗିଲା । ଆଜି ଖରାବେଳେ ବର୍ଷା ହେବାର ସମ୍ଭାବନା । ଦିନଟି ଥଣ୍ଡା । ସେଥିପାଇଁ ନିଦ ଭଲ ହେଲା । ଆଜି ଖରାବେଳେ ସ୍ୱପ୍ନରେ ମୁଁ ମା (ଯୋଗମାୟା)ଙ୍କୁ ଦେଖିଥିଲି । ଆଉ 'ମା' ର ନାମ ଜପ କରିଥିଲି ।

ସ୍ୱପ୍ନ ଯୋଗୁ ମନ ଖୁବ ଭଲ ଲାଗିଲା । ୩ ଟାରେ ମା (ବୋଉ) ଉଠାଇ ଦେଲା । କିନ୍ତୁ ଏତେ ଜୋରରେ ନିଦ ହୋଇଥିଲା ଯେ ଉଠିବାକୁ ଇଚ୍ଛା ହେଉ ନ ଥିଲା । ଗୁଂଡା ଖାଇ ସାଇକେଲରେ ବାହାରକୁ ଯିବି, ଏଇ ସମୟରେ ଗୌରୀପୁରର ରମେଶଜୀ (ମୋ ଭାଇଙ୍କର ଶଳା) ଆସିଲେ ।

୪ଟା ରେ ବାହାରକୁ ଗଲି । ଅମର ଦର୍ଜୀର ଦୋକାନରେ ବସି ଗଣେଶ (କଲିକତା) ସହିତ କଥାବାର୍ତ୍ତା କରୁଥିଲି । ଏତିକିବେଳେ ପ୍ରଣବ ଆସିଲା । ଗୋବିନ୍ଦଲାଲ ସହିତ ଦେଖା ହେଲା । ମୁଁ ଏବଂ ସେ ନଦୀ ଆଡ଼କୁ ଗଲୁ । ବାଟରେ ଗୋପାଳ ସହିତ ଦେଖା ହେଲା । ନାନା ଧରଣର ଆଜେ, ବାଜେ ସମ୍ପର୍କ ନଥିବା କଥାବାର୍ତ୍ତା ହେଲା । ୬ଟା ରେ ଘରକୁ ଆସିଲି । ଦୁଇଟା ଲୁଗା ଧୋବାକୁ ଇସ୍ତ୍ରୀ କରିବାପାଇଁ ଦେଇ ଆସିଲି । ଖାଇପିଇ ଡାଇରୀ ଲେଖୁଛି (୭ଟା ୨୫ ମିଠ) ।

ରାତିରେ ହସ୍ତମୈଥୁନ କରି ଗାର୍ଜି ନଜେ ଖାଇଲି । ଏ ପ୍ରକାର ଆଉ କରିବି ନାହିଁ । ମା ! (କାଳୀ), କ୍ଷମା କର !

ସପ୍ତାହର କଥା । ଏଇ ସପ୍ତାହଟି ଭଲ ଭାବରେ ଯାଇଛି । ପଢ଼ାପଢ଼ି ବିଶେଷ କିଛି ହୋଇନି । ମାଙ୍କ ନାମ ଜପ କରୁଅଛି । ମନ ବର୍ତ୍ତମାନ ଭଲ ଲାଗୁଚି । ଶରୀର ଭଲରେ ଚାଲିଛି । 'ମା'ଙ୍କ ପ୍ରତି ଅଳ୍ପ ଅଳ୍ପ ଭକ୍ତି ହୋଇଛି । ଦିନେ ଦୁଇଦିନ ହେବ, ପଢ଼ିବାକୁ ମନ ହେଉଛି । କାମଭାବ ଦିନେ ଦୁଇଦିନ ହେବ ପ୍ରବଳ ।

ଗୋବିନ୍ଦକୁ ଗୋଟିଏ ବନ୍ଧୁ ଦେବାକୁ ନାହିଁ କରି ଆଘାତ ଦେଇଥିଲି । ଆଜି ବାବୁରାମର ଚୌକିଦାରୀର ପୋଷ୍ଟକୁ ବିଦ୍ରୂପ କରି ଆଘାତ ଦେଲି । ବେଙ୍ଗାଲୀ ମାନଙ୍କୁ ବେଙ୍ଗାଲୀରେ ସମାଲୋଚନା କରି କାଲି ଆଘାତ ଦେଇଥିଲି । ( କିନ୍ତୁ କାହାର କ୍ଷତି କରିନି । )

॥ ୧ ସେପ୍ଟେମ୍ବର ୧୯୬୯ : ସୋମବାର ॥

ସକାଳେ ଟ୍ରେନ୍‌ରେ ଧୁବୁରି ଗଲି । ବର୍ଷା ଯୋଗୁ କଲେଜ ଶୀଘ୍ର ଛୁଟି ହୋଇଗଲା ।

ମୁଁ, ସ୍ୱରାଜଲାଲ ଆଉ ଉପେନ୍ ବଜାରକୁ ଗଲୁ । ଗୋଟାଏ ବସ୍‌ରେ ଆସିଲୁ । ଗୌରୀଶଙ୍କରଙ୍କ ପିଲା ଝଗଡ଼ାକରି ପଇସା କମ୍ ଦେଲେ । ମୁଁ ମଧ୍ୟ ୧୫ଙ୍କା ୧୦ ପଇସା ଯାଗାରେ ୬୦ ପଇସା ଦେଲି । ମୋର କିନ୍ତୁ କମ ଦେବାକୁ ଇଚ୍ଛା ନଥିଲା । ବାଧ୍ୟ ହୋଇ ଦେଇଥିଲି ।

ଅପରାହ୍ଣରେ ସ୍ୱରାଜଲାଲ, ମୁଁ ଏବଂ ନନ୍ଦଲାଲ ଛକ ଆଡ଼କୁ ବୁଲିବାକୁ ଗଲୁ । ନାନା ଧରଣର ବାଜେ ଗଳ୍ପ ହେଲା ।

ଆଜି ସ୍ୱରାଜଲାଲକୁ ଅନ୍ୟ ସବୁଦିନ ପରି ଭଲ ପାଇନି । ନାମ ଜପ କରୁଛି ।

|| ୨ ସେପ୍‌ଟେମ୍ବର ୧୯୬୯ : ମଙ୍ଗଳବାର ||

ସକାଳଠାରୁ ଖୁବ୍ ଜୋରରେ ବର୍ଷା ହେଉଛି । ଆଜି ସକାଳ ୬ଟା ୩୦ରେ ଉଠିଲି । ଗାଧୋଇଲି ନାହିଁ ।

ଟ୍ରେନରେ ଧୂବୁଡ଼ି ଗଲି । ସ୍ୱରାଜଲାଲ ଯାଇନି । ପ୍ରଣବ, ନନ୍ଦଲାଲ, ଜଗଦ୍ଦୀପେନ୍, ବାସୁଦେବ, ଉପେନ୍ ଆମେ ଗୋଟିଏ ଡବାରେ ଉଠିଥିଲୁ ।

ବର୍ଷା ହେଉଛି । ଷ୍ଟେସନରୁ କଲେଜ ଚାଲି ଉପେନ୍ ଛତାରେ । ଆଜି ସବୁ କ୍ଲାସ ହେଲା । ଆଜି କ୍ଲାସରେ ଅଳ୍ପ ଅଳ୍ପ ମନ ଲାଗିଥିଲା । ଦର୍ଶନ କ୍ଲାସରେ ବସିବାକୁ ଇଚ୍ଛା ନଥିଲା ।

ଛୁଟି ପରେ ସୁବଳ ସହିତ ଆଶ୍ରମକୁ ଗଲି । କିନ୍ତୁ ତାଙ୍କୁ ପାଇଲି ନାହିଁ ।

ସାଢ଼େ ୩ଟା ବସରେ ଆସିଲି । ୫ଟାରେ ସ୍ୱରାଜଲାଲ ଆମ ଘରକୁ ଆସିଲା । ଆମେ ବୁଲିବାକୁ ଗଲୁ । ପ୍ରଣବ, ନନ୍ଦଲାଲ, ଗୋପାଳଙ୍କୁ ରାସ୍ତାରେ ଭେଟିଲୁ । କରବାବୁଙ୍କ ପାଖକୁ ଗଲୁ । କରବାବୁ ଆମକୁ ବସ ସଂଘର ସମ୍ପାଦକଙ୍କୁ ଯୋଗାଯୋଗ କରିବାକୁ କହିଲେ । ରାତିରେ ସ୍ୱପ୍ନ ଦୋଷ ହେଲା ନ ।

|| ୩ ସେପ୍‌ଟେମ୍ବର ୧୯୬୯ : ବୁଧବାର ||

ଆଜି ଜନ୍ମାଷ୍ଟମୀ ପାଇଁ କଲେଜ ବନ୍ଦ । ଆଜି ବର୍ଷା ନାହିଁ, ଖରାବେଳେ ଖୁବ୍ ଗରମ ହେଉଛି ।

ସ୍ୱରାଜଲାଲ ସହିତ ଦେଖା ହୋଇନି । ମୁଁ ଏବଂ ପ୍ରଣବ ଗୋପାଳର ଘରକୁ ଗଲୁ । ରମନାରାୟଣ ସହିତ ଆଜି ଗୋଟିଏ ମାସ ପରେ ଦେଖା ହେଲା ।

ସେବେଳେ 'ମୁକ୍ତ' ପତ୍ରିକାରୁ କେତୋଟି କବିତା ପଢ଼ିଲି । ମୋ ଗ୍ରେଟ ଝିଅମାନଙ୍କୁ ମିଠାଇ, ବିସ୍କୁଟ୍ ଖୁଆଇଲି । ତାଙ୍କୁ ଖୋଇବାରେ, ଖେଳାଇବାରେ ଖୁବ୍ ଭଲଲାଗେ ।

ଶ୍ୟାମଲାଲକୁ ଭଲପାଇବା ଅଳ୍ପ ଅଳ୍ପ କରି କମୁଛି । ସେଥିପାଇଁ ବୋଧହୁଏ ଆଜି ଶ୍ୟାମଲାଲକୁ ଛାଡ଼ି ମୁଁ ଗୋପାଳ ଘରକୁ ବୁଲିବାକୁ ଗଲି । ଦୁଇଦିନ ଆଗେ ଶ୍ୟାମଲାଲ ପାଇଁ ପ୍ରାଣ ଦେବାଟା ସୌଭାଗ୍ୟ ମନେ କରୁଥିଲି, କିନ୍ତୁ ଆଜି ତାର କଳ୍ପନା କରିବା କେମିତି କେମିତି ଲାଗେ । ମା ! ତୁମେ ସବୁ, ତୁମର ଇ ଏଇ ସବୁ ଲୀଳା ଖେଳା । ଏମିତି ଭାବ ହେଲାରୁ ମୋ ମନରେ ମାଙ୍କ ଉପରେ ସନ୍ଦେହ ହୁଏ । ବିଚିତ୍ର ଏଇ ଦୁନିଆ । ଜଗତର ସ୍ରଷ୍ଟା ମା ହିଁ, ଏକମାତ୍ର ସତ୍ୟ । ବାକି ସବୁ ମିଥ୍ୟା । ନକଲର ମୋହରେ ପଡ଼ି ଆମେ ଅସଲ ବସ୍ତୁକୁ ଭୁଲି ଯାଉ ।

॥ ୪ ସେପ୍ଟେମ୍ବର ୧୯୬୯ : ଗୁରୁବାର ॥

ସାତଟାରେ ଉଠିଲି । ସକାଳେ 'ମିଶ୍ରକରଣ' ପଢ଼ି ଶେଷ କଲି । ଆଜି ସାରାଦିନ ଭୀଷଣ ଗରମ ପଡ଼ୁଛି ।

ସକାଳ ଟ୍ରେନ୍‌ରେ ଧୁବୁରି ଗଲି । ଗାଡ଼ିରୁ ଓହ୍ଲାଇ ପ୍ରଥମେ ଆଶ୍ରମ ଆଡ଼କୁ ଗଲି । ଆଶ୍ରମ ବୁଲିଲି । ମାଙ୍କ ସହିତ ଦେଖାହେଲା । ମା ମୋତେ କାଲି ଆସିବାକୁ କହିଲେ । ୧୨ଟା ୧୫ରେ କ୍ଲାସ । ମୁଁ କଲେଜ ଆଡ଼କୁ ଯାଉଛି, ରାସ୍ତାରେ ଦେଖିଲି ମୋ ୧୦ଟଙ୍କିଆ କଲମଟି ନାହିଁ । କିନ୍ତୁ କଲମର 'କ୍ୟାପ୍' ଟା ମୋ ଜାମାରେ ଲାଗି ରହିଛି । ମୁଁ ପୁଣି ଆଶ୍ରମ ଆଡ଼କୁ ଛୁଟିଲି । କିନ୍ତୁ କଲମ ପାଇଲିନି । ମୁଁ ୩ ଟଙ୍କା ଦେଇ ନୂଆ କଲମଟିଏ କିଣିଲି । ଭୁଲି ଭୁଲି ମା କାଳୀଙ୍କୁ ଦୋଷ ଦେଲି ଯେ ମୁଁ ତାଙ୍କ ଆଶ୍ରମକୁ ଗଲି ବୋଲି ମୋର କଲମଟାକୁ ହଜାଇ ଦେଲି ।

ଏତେ ବଡ଼ ଧୁବୁରି, କେଉଁଠି କଲମଟା ପାଇବି । ମୋର ମନର ଆଶା ହିସ ଭୁଲିଗଲା । କିନ୍ତୁ ମା'ର ଦୟା ! ରାସ୍ତାରେ ଆମ କ୍ଲାସର ଜଣେ ପିଲା ସାଇକେଲ ଧରି ଠିଆ ହୋଇଥିଲା । ମୁଁ ତା ସାଇକେଲରେ ଉଠି ଯାଇ ସେଇ ପିଲାଟାକୁ କହିଲି ଯେ ମୁଁ ଗୋଟିଏ କଲମ ହଜାଇ ଦେଇଛି । ରଙ୍ଗ ଢଙ୍ଗ କହିଲି । ପିଲାଟି କହିଲା ଯେ ମୁଁ ଜଣେ ଲୋକକୁ ଦେଖିଛି ଯିଏ ସେ କଲମଟା ପାଇଛି, ଏବଂ ସେଇ ଲୋକଟି ପାନ ଦୋକାନରେ କଲମଟି ଜମା ଦେଇଛି । ଆମେ ଦୁଇଜଣ ପୁଣି ଫେରି ପାନ ଦୋକାନକୁ ଆସିଲୁ ଆଉ କଲମଟା ପାଇଗଲି ।

ମୁଁ ଏବଂ ଉପେନ୍ ଗୋଟିଏ ବସ୍‌ରେ ଆସିଲୁ । ଅପରାହ୍ଣରେ ମୁଁ, ପ୍ରଣବ, ଗୋପାଳ ଆଉ ଭୁରନ୍ ଛକ ଆଡ଼କୁ ବୁଲିବାକୁ ଗଲୁ । ଖୁବ୍ ଗରମ । ରାତିରେ ପଢ଼ା ପଢ଼ି ହୋଇନ ।

॥ ୫ ସେପ୍‌ଟେମ୍ବର ୧୯୬୯ : ଶୁକ୍ରବାର ॥

କଲେଜକୁ ଗଲି । 'ଟିଚର୍ସ ଡେ' ପାଇଁ ଗୋଟିଏ ପିରିଅଡ଼ କ୍ଲାସ୍ ହେବାପରେ ମିଟିଂ ହେଲା । ମୁଁ ମିଟିଂରେ ଯୋଗ ନଦେଇ ସୁବଳ ଏବଂ ଉପେନ ସହିତ ଯୋଗମାୟା ଆଶ୍ରମକୁ ଗଲୁ ।

ମା ମନ୍ତ୍ରର କେତେ ଗୁଡ଼ିଏ ଶବ୍ଦ ସଂଶୋଧନ କରି ଦେଲେ, କହିଲେ ଯେ ଛଅ ମାସ ଭିତରେ ମା କାଳୀଙ୍କୁ ପାଇବାର ଆଶା ଅଛି ।

'ରାଜକୁମାର' ଫିଲ୍ମଟି ଦେଖିଲୁ । ସମସ୍ତଙ୍କୁ ମୋତେ ଦେଖାଇବାକୁ ପଡ଼ିଲା । ରିକ୍‌ସାରେ ୯୦ ପଇସା ଲାଗିଲା । ମୋ ମୁଣ୍ଡ ଗରମ ହୋଇଗଲା । ହୀରାଲାଲ, ଭୁରନ୍ , ନନ୍ଦଲାଲ ଦେଖିଛନ୍ତି ।

॥ ୬ ସେପ୍‌ଟେମ୍ବର ୧୯୬୯ : ଶନିବାର ॥

ଆଜି ସକାଳୁ ଖୁବ୍ ବର୍ଷା ହେଉଛି । ସେଥିପାଇଁ ଆଜି ଉଠିବାରେ ଅଳ୍ପ ଡେରି ହେଲା । ହାତ ମୁହଁ ଧୋଇ ଚା'ପା ଖାଉ ଖାଉ ୮ଟା ବାଜିଲା ।

ଆଜି ୯ଟା ୧୫ ରେ ଦର୍ଶନ କ୍ଲାସ ଅଛି । ମୁଁ ପ୍ରେମସୁନ୍ଦର ଗାଡ଼ିରେ ଗଲି । ଦର୍ଶନର ଅଧ୍ୟାପକ ବାଗ୍‌ଚି ଆଜି ଆସି ନାହାନ୍ତି । ତା ପରେ ଇଂରାଜୀ କ୍ଲାସ ହେଲା । ତା ପରେ ଗୋଟି ପିରିଅଡ୍ ଲିଜର୍ । ତା ପରେ ବରୁଆର ରାଜନୀତି ବିଜ୍ଞାନ କ୍ଲାସ ହେଲା । ୧ଟା ୧୫ ରେ ଶେଷ । ମୁଁ ଆଉ ଉପେନ୍ ୨ଟା ବସରେ ଫେରି ଆସିଲୁ । ଗୌରିପୁରରେ ମୋବାଇଲ କୋର୍ଟ ବସଟାକୁ ଧରିଲା । ଅତ୍ୟଧିକ ଯାତ୍ରୀ ପାଇଁ ୭୦ଟଙ୍କା ଫାଇନ୍ କଲା ।

ଆଜି ବି ହୀରାଲାଲ ପ୍ରତି ମୁଁ ଅନୁରକ୍ତ ନୁହେଁ । ସେଥିପାଇଁ ବୋଧହୁଏ ମୁଁ ହୀରାଲାଲର ଖୋଜ ଖବର ନନେଇ ବସରେ ଯାଇ ବସିଲି ।

ସନ୍ଧ୍ୟାରେ ହୀରାଲାଲ ସହିତ ଦେଖା ହୋଇଥିଲା । ପ୍ରଣବ, ଗୋପାଳ, ବାବୁରାମ ଆଦିଙ୍କ ସହିତ ରାଜନୀତି ନେଇ ତୁମୁଳ ଯୁକ୍ତିତର୍କ ଲାଗିଲା ।

ସନ୍ଧ୍ୟା ୭ଟା ରେ ଘରକୁ ଫେରିଲି । ଖାଇ ପିଇ ପଢ଼ିବାକୁ ବସିଲି ।

୯ଟା ରେ ଶୋଇ ପଡ଼ିଲି ।

॥ ୭ ସେପ୍‌ଟେମ୍ବର ୧୯୬୧ : ରବିବାର ॥

ସକାଳ ୭ଟା ରେ ନିଦରୁ ଉଠିଲି । ପାଇଖାନା ଯାଇ ଚା', ରୁଟି ଖାଇଲି । ପଢ଼ିବାପାଇଁ ବସିବା ଆଗରୁ ୧୦/୧୨ ଥର ନାମ ମନେ ମନେ ଉଚ୍ଚାରଣ କଲି ।

ରାଜନୀତି ବିଜ୍ଞାନ ପ୍ରଥମ ପ୍ରଶ୍ନର ଉତ୍ତର ପ୍ରଥମ ଥର ପାଇଁ ପଢ଼ିବା ସମୟରେ ପ୍ରଣବ ଆସିଲା । ଅଳ୍ପ ସମୟ ପରେ ନନ୍ଦଲାଲ ଆସିଲା ।

୯ଟା ୩୦ରେ ଲୁଗା ଜାମା ସଫା କଲି, ଗାଧୋଇଲି । ଖାଇ ପିଇ ଉଠୁ ଉଠୁ ସାଢ଼େ ଦଶଟା ହେଲା । 'ମୁକ୍ତା' ନାମର ହିନ୍ଦୀ ପତ୍ରିକା ପଢ଼ିବାକୁ ଧରିଲି । ଅଧଘଣ୍ଟା ଶୋଇଲି । ଆଜି ବର୍ଷା ନାହିଁ । ଖୁବ୍ ଗରମ ପଡ଼ୁଛି । ସନ୍ଧ୍ୟାରେ ସାଇକେଲ ନେଇ ବାହାରକୁ ବାହାରିଲି । ବୁରନ୍‌ର ଘରକୁ ଯାଇ ବୁରନ୍‌କୁ ଜ୍ୟାମିତିର ସରଳ ରେଖା, ବିନ୍ଦୁ, କୋଣ ଆଦି ବୁଝେଇଲି । ବିଜୟା ସହିତ ଦେଖା ହେଲା । ତାକୁ ବର୍ତ୍ତମାନ ବି ଅଳ୍ପ ଅଳ୍ପ ଭଲପାଏ । ତାପରେ ପ୍ରଣବ ଘରକୁ ଗଲି । ପ୍ରଣବ ଘରେ ନଥିଲା । ଗୋପାଳର ଘରକୁ ଯାଇଥିଲା । ପ୍ରଣବଙ୍କ ଘରେ ବାଦଲ୍ ସହିତ ଦେଖା ହେଲା । ଧୁବୁଲ ପାଓ୍ୱାର ହାଉସ୍‌ର ବାଦଲ୍ ଦାସ ସହିତ ପୋଲ୍ ଆଡ଼କୁ ଗଲି । ପୋଲରେ ପ୍ରଣବ ଆଉ ଗୋପାଳ ସହିତ ଦେଖା ହେଲା । ଆମମାନଙ୍କ ଭିତରେ ରାଜନୀତି, ଇତିହାସ, ଦର୍ଶନ ବିଷୟରେ ଯୁକ୍ତିତର୍କ ଆରମ୍ଭ ହେଲା । କର ଦା'ଙ୍କ ପାଖକୁ ଗଲୁ । କର ଦା'ଙ୍କ ସହିତ ନାନା ବିଷୟରେ ଆଲୋଚନା ହେଲା ।

ଘରକୁ ଆସୁ ଆସୁ ୭ଟା ୧୫ ହେଲା । ଖାଇ ପିଇ ବର୍ତ୍ତମାନ ଡାଇରୀ ଲେଖୁଛି । ଆଜି ପ୍ରଣବକୁ "ମା ଓ ସେବୁଙ୍କର ଘୋଡ଼ ଚଟା" କୁକୁର ବୋଲି କହିଲି ।

ଶୋଇବା ଆଗରୁ ଖରାପ ଚିନ୍ତା କଲି । ମା'ଙ୍କ ନାମ ନେଇନି, ଆସନ କରିନି, ପାଣି ଖାଇନି, ସେଥିପାଇଁ ସ୍ୱପ୍ନ ଦୋଷ ହେଲା ।

(କାଲିର କାମ — ପ୍ରଣବପାଖରୁ ବହି ଆଣିବା, ଗୋବିନ୍ଦଠାରୁ 'ରହସ୍ୟ' ଆଣିବା, ଘର ଦେଖିବା, ଆଶ୍ରମକୁ ଯିବା, ରୁମାଲ୍ କଥା କହିବା । )

॥ ୮ ସେପ୍ଟେମ୍ବର ୧୯୬୮ : ସୋମବାର ॥

ବିଶେଷ କିଛି ଘଟିନି । ପ୍ରତ୍ୟେକ ଦିନ ପରି କଲେଜକୁ ଗଲି । ଟ୍ରେନ୍‌ରେ ଆସିଲି । ଘଣ୍ଟାର ନୂଆ ଫିତା କିଣିଲି, କଭର କିଣିଲି ଏବଂ ଘଣ୍ଟାର ଗ୍ଲାସ କିଣିଲି । ମୋଟ୍ ସାତ ଟଙ୍କା ଖରଚ ହେଲା । ୧ଟଙ୍କା ବସରେ, ୧ଟଙ୍କା ୫୦ପ. ଜଳ' ଖିଆରେ ଗଲା । ମୋଟ ୧୦ଟଙ୍କା ଖଣ୍ଡେ ଖର୍ଚ୍ଚ ହେଲା ।

ଆଶ୍ରମର ମା ଯେଉଁ ଲୁଗା କପଡ଼ା ଦେଇଥିଲେ ସେଇଟା ହଜାଇଦେଲି ।

ଶ୍ୟାମ ସୁନ୍ଦର ଅଗ୍ରୱାଲ (ଯୁଗଳ ଦା'ଙ୍କ କ୍ଲାସମେଟ୍)ଙ୍କ ସହିତ ଧୂବୁଶରେ ମୋର ଚହ୍ଲା ପରିଚୟ ହେଲା । ସେ ମୋର ମୁହଁର କଟିଂ ଦେଖି ବୁଝିପାରିଲେ ମୁଁ ଯୁଗଳର ଛୋଟ ଭାଇ ।

॥ ୯ ସେପ୍ଟେମ୍ବର ୧୯୬୯ : ମଙ୍ଗଳବାର ॥

ଗାଡ଼ିରେ କଲେଜକୁ ଗଲି । ସୀରାଲାଲ, ପ୍ରଣବ, ଜଗଦ୍ବିପେନ୍ଦ୍ର ପ୍ରଭୃତି ଥିଲେ । ମୁଁ ସୀରାଲାଲକୁ ପୁଣି ଭଲ ପାଇବା ଆରମ୍ଭ କରିଛି ।

କଲେଜ ଛୁଟି ପରେ ଆଶ୍ରମକୁ ଯାଇଥିଲି, କିନ୍ତୁ ମା ଶୋଇଥିଲେ । ସନ୍ଧ୍ୟାରେ ମୁଁ, ପ୍ରଣବ, ଗୋପାଳ, କମଳ ଆଦି ବୁଲିଲୁ । କର ଦା'ଙ୍କ ସହିତ ଦେଖା ହୁଏ । ସୀରାଲାଲ ଘରକୁ ମୁଁ ଆଉ ପ୍ରଣବ ଯାଇଥିଲୁ, କିନ୍ତୁ ସେ ଆମ ସହିତ ବୁଲିବା'କୁ ଆସିଲାନାହିଁ ।

ଆଉ ବିଶେଷ କିଛି ଆଜି ଘଟିନି । ସକାଳେ ମନ୍ତ୍ର ଉଚ୍ଚାରଣ କରିବାକୁ ମନେ ନ ଥିଲା । ସେଥିପାଇଁ ବର୍ତ୍ତମାନ କରୁଛି । ଶାରୀରିକ ଅବସ୍ଥା ଠିକ୍ ଅଛି ।

॥ ୧୧ ସେପ୍ଟେମ୍ବର ୧୯୬୯ : ଗୁରୁବାର ॥

ପ୍ରତ୍ୟେକ ଦିନ ପରି କଲେଜ ଯିବା, କାମ କାର୍ଯ୍ୟ ସବୁ କିଛି ଚାଲିଛି । ପଢ଼ା ପଢ଼ି କିଛି ହେଉନି । ସୀରାଲାଲକୁ ପୁଣି ଭଲପାଇବା ଆରମ୍ଭ କରିଛି ।

ଅପରାହ୍ଣରେ ମୁଁ, ପ୍ରଣବ ଆଉ ବୁରନ୍ ଗୋପାଳ ପାଖକୁ ଗଲୁ । ଗୋପାଳକୁ ପୋଲ ଉପରେ ଭେଟିଲୁ । ଗୋପାଳକୁ ମୁଁ ସାଇକେଲରେ ଉଠାଇଲି ଆଉ ପ୍ରଣବକୁ ବୁରନ୍ ଉଠାଇଲା । ମୋ ଦେହ ଖୁବ୍ କ୍ଲାନ୍ତ ଥିଲା । ମୁଁ ସନ୍ଧ୍ୟାର

ପାରିଲି ନାହିଁ । ପୋଲ ଉପରେ ଗୋଟିଏ ବୁଢ଼ା ଲୋକ ଉପରେ ପଡ଼ିଗଲି । ଲୋକଟି ଭଲ ଥିଲା । ସେଥିପାଇଁ କିଛି କହିଲା ନାହିଁ । କିଛି ଦୂର ପରେ ପୁଣି ଗୋପାଳକୁ ଷୋପଃକ୍ତ ଦେଲି । ଏଥର ଗୋପାଳର ହାତରେ ଖୁବ୍ ଜୋର ଆଘାତ ଲାଗିଲା ।

ଆନନ୍ଦରେ ଦିନଟି କଟିଗଲା ।

॥ ୧୨ ସେପ୍ଟେମ୍ବର ୧୯୭୯ : ଶୁକ୍ରବାର ॥

ଆଜି କଲେଜରେ ସାମାଜିକ ମଉଜ ମଜଲିସ୍ । ମୁଁ ଆଉ ସ୍ୱାଗ୍ନିଲ ଟ୍ରେନରେ ଗଲୁ । ପ୍ରଥମେ କୃଷ୍ଣା ହୋଟେଲକୁ ଗଲୁ । ତାପରେ ଗଲୁ ଯେଉଁଠି ଗୋବିନ୍ଦ ଏବଂ ବାଦଲ ଥାଆନ୍ତି । ସେଠାରେ ଗୋବିନ୍ଦ ଆଉ ବାଦଲ, ଦୁଇଜଣଙ୍କୁ ଭେଟିଲୁ । ମୁଢ଼ି ଫୁଟି ଖାଇଲୁ । ବେଶ ଅଛା ତାମସା ଭିତରେ ଦୁଇଟା ବାଜିଲା ।

ତାପରେ ସ୍ୱାଗ୍ନିଲ ବଜାରରେ ନିଜର କାମ କରିବାରେ ଲାଗିଲା । ମୁଁ ଆଉ ଗୋବିନ୍ଦ ସାଇକେଲ ଚଢ଼ି ଆଶ୍ରମକୁ ଗଲୁ । ମା ଆଶ୍ରମରେ ଥିଲେ । ମୋତେ ଏକ ଲାଲ କପଡ଼ାର ଟୁକୁଡ଼ା ଦେଲେ । ସେ କହିଲେ କାମ କାର୍ଯ୍ୟ ଭିତରେ ଭଗବାନଙ୍କ ସେବା କରିବାକୁ ହୁଏ । ପ୍ରସାଦ ଦେଲେ । ଖାଇଲି । ତାଙ୍କର ଏକ ଶିଷ୍ୟ କି ଭୁଲକାମ କରିଲେ, ସେଥିପାଇଁ ସେ ତାଙ୍କୁ ଗ୍ଲୁମୁଚରେ ମାରିଲେ । ଗୋବିନ୍ଦ ନିଜର ପଢ଼ା ପଢ଼ି ନହେବାର କାରଣ ପଚ୍ଛରିଲା । ସେ ଗୋବିନ୍ଦର ନାମ ପଚ୍ଛରିଲେ, ଆଉ ମୋତେ ଏବଂ ଗୋବିନ୍ଦକୁ ରବିବାରରେ ଯିବାକୁ କହିଲେ । ମୁଁ କହିଲି, ଅଚ୍ଛା । ଟାଇମ୍ ପାଇଲେ ଆସି ପାରେ ।

ତାପରେ ଗୋବିନ୍ଦ ଖାଇବାକୁ ଗଲା । ସ୍ୱରଜଣ, ଗୋବିନ୍ଦ, ସ୍ୱାଗ୍ନିଲ, ମୁଁ ଚଉଦା' ଟିକଟ କଲୁଁ 'ବସନ୍ତ ଟକିଜ'ରେ, ମ୍ୟାଟିନ୍ ସୋ 'ଇନ୍ ଭବନର ପାରେ' ବେଙ୍ଗଲା ଫିଲ୍ମ ଚାଲିଥିଲା ।

ଫିଲ୍ମଟି ବେଶୀ ଭଲ ଲାଗିଲା ନାହିଁ । ସାଢ଼େ ୫ଟା ରେ ଶେଷ ହେଲା । ରାସ୍ତାରେ ବିଜୟ ଆଉ ମହାବୀରଙ୍କୁ (ପି. ୟୁ. ଶ୍ରେଣୀର) ଭେଟିଲୁ । ମୁଁ ମହାବୀରର ସାଇକେଲରେ, ସ୍ୱାଗ୍ନିଲ ବିଜୟ ସାଇକେଲରେ ଉଠି, ଷ୍ଟେସନ ଅଡ଼କୁ ଗଲୁ ।

ରାତିରେ ପଢ଼ା ପଢ଼ି ହୋଇନି । ଖରାପ ଚିନ୍ତା ଆସିଲା, ଆସନ, ଏବଂ ନାମ ଜପ ନ କରିବାରୁ ରାତିରେ ସ୍ୱପ୍ନ ଦୋଷ ହେଲା । ସ୍ୱପ୍ନରେ ମୁଁ ଦେଖିଲି ଆମ କ୍ଲାସର ଜଣେ ଝିଅକୁ । ତାର ରୋଲନମ୍ବର '୩୪' । ସ୍ୱପ୍ନର ବର୍ଣ୍ଣନାଟି ତଳେ ଦେଲି ।

ମୁଁ ସେ ଝିଅଟିକୁ ଖୁବ୍ ଭଲପାଏ । ମୋର ଆଉ ତା'ର କେଜାଣି କେମିତି କଥାବାର୍ତ୍ତା ସ୍ୱପ୍ନରେ ହୋଇଚାଲୁ । ମୁଁ ତା'ର ହାତ ଧରିଲି, ଚୁମ୍ବନ ଦେଲି । ଗୋଟିଏ ଉତ୍ତେଜନାରେ ଉଠିଲି । ସ୍ୱପ୍ନରେ ଏମିତି କରୁ କରୁ ମୋର ସ୍ୱପ୍ନ ଦୋଷ ହୋଇଗଲା ।

|| ୨୩ ସେପ୍ଟେମ୍ବର ୧୯୬୯ : ବୁଧବାର ||

ଅନେକ ଦିନ ପରେ ଆଜି ଡାଇରୀ ଲେଖିଲି । ଆଳସ୍ୟ ଯୋଗୁ ସବୁଦିନ ଲେଖି ନାହିଁ ।

ବର୍ତ୍ତମାନ ମୁଁ ନିଜକୁ ଖୁବ୍ ଛୋଟ ଭାବେ । ସ୍ୱାଗତଲାଲକୁ ବର୍ତ୍ତମାନ ଭଲ ପାଏନା । କିଛି କିଛି ଘୃଣା ବି କରେ । ଆଜି ମୋତେ ସ୍ୱାଗତଲାଲ ରାମଲୀଳା ଦେଖିବାକୁ କହିଲା, ମୁଁ ମନା କରି ଦେଲି । ମୁଁ ବର୍ତ୍ତମାନ ଜଣେ ନାଗରିକର ପୁଅକୁ ଭଲ ପାଏ । ଆଉ ତାର ପଛେ ପଛେ ବୁଲୁଛି ।

କିନ୍ତୁ ଦୁଇଦିନ ହେଲା ତାକୁ ଦେଖିନାହିଁ । ନାମ ଜପ କରିବାକୁ ଭଲ ଲାଗେନା । ରାତିରେ ସ୍ୱପ୍ନ ଦୋଷ ହେଲା ।

ମୁଁ ସ୍ୱାଗତଲାଲ ପାଇଁ ଗୌହାଟୀରେ ଭର୍ତ୍ତି ନହୋଇ ଧୁବୁଡ଼ିରେ ହୋଇଥିଲି ଆଉ ସ୍ୱାଗତଲାଲ ପାଇଁ ଅନର୍ସ ବାଦ୍ ଦେଇଥିଲି । କାହିଁକନା, ଏଇଥିପାଇଁ ଯେ ମୁଁ ଏବଂ ସ୍ୱାଗତଲାଲ ଏକା ସାଙ୍ଗରେ ଟ୍ରେନରେ ଆସି ପାରିବୁ । ମୁଁ ବର୍ତ୍ତମାନ ମନେ ମନେ ଖୁବ୍ ପସ୍ତାଉଛି ଏବଂ ହା'ହୁତାଶ କରୁଛି । ଦୁଇ ଦିନ ହେଲା ପ୍ରେମଚନ୍ଦଙ୍କ ଲେଖା ଉପନ୍ୟାସ 'ଗୋଦାନ' ପଢୁଅଛୁ, ଆଉ ଆଜି ପଢ଼ି ଶେଷ କରିଲି । ଗୋଦାନ ହିନ୍ଦୀର ଶ୍ରେଷ୍ଠ ଉପନ୍ୟାସ । ମୋତେ ଖୁବ୍ ଭଲ ଲାଗିଲା ।

କ୍ଲାସରେ ପଢ଼ାପଢ଼ି ଏକଦମ୍ ହେଉ ନାହିଁ ।

କେତେ ଦିନ ହେବ ଆମ ସହିତ ମାଣିକ ନାମକ ଜଣେ ବି. ଏ. ପାସ୍ ପିଲା ସହିତ ପରିଚୟ ହୋଇଛି । ପିଲାଟି ସୁଧୀର ଡାକ୍ତରର ଭଣଜା ହୁଏ । ସେ କୋକ୍ରାଝର କଲେଜରୁ ପାସ୍ କରି ଆସିଛି ।

୧୬ ତାରିଖ ଠାରୁ 'ସତ୍ୟାଗ୍ରହ' ଚାଲିଛି । ଜେଲ ଶୋଧନାଗାର ପାଇଁ । ମୁଁ ଦିନଟିଏ ବି ଯୋଗ ଦେଇଛି ।

ପୋଲ ଉପରେ ଜଣେ ଲୋକଙ୍କ ସହିତ ସନ୍ଧ୍ୟା ପରିଚୟ ହୋଇଛି, ତାଙ୍କ ନାଁ ରାମ ପ୍ରସାଦ ଦୁବେ ।

|| ୨୪ ସେପ୍‌ଟେମ୍ବର ୧୯୬୯ : ଗୁରୁବାର ||

ସକାଳେ ପ୍ରଣବ ଖାଇ ପିଇ କଲେଜ ଯିବାକୁ ବାହାରୁଛି ମୁଁ ଏଡକି ବେଳେ ତା ଘରକୁ ଯାଇ ତାକୁ ଯିବାକୁ ମନା କଲି । ମୁଁ ଶୁଣିଥିଲି ଧର୍ମଘଟ ହେବ ବୋଲି । ପରେ ଜାଣି ପାରିଲି ଯେ ଆମ କଲେଜ ହୋଇଛି, ପ୍ରଣବର ପାଖକୁ ଗଲି । କଲେଜର ଗୋଟିଏ ବହି ଆଣିଲି । ଅପରାହ୍ଣରେ ମୁଁ, ପ୍ରଣବ ଆଉ ଗୋପାଳ ବୁଲିବାକୁ ଗଲୁ । ମୋର 'ଅନନ୍ୟ କାହାଣୀ' ଟା ମାଣିକ ଭା'ଙ୍କୁ ପଢ଼ିବାକୁ ଦେଲି ।

|| ୨୬ ସେପ୍‌ଟେମ୍ବର ୧୯୬୯ ' ଶୁକ୍ରବାର ||

କ୍ଲାସ ଭଲ ଭାବରେ ହେଲା । ପ୍ରଥମ ପିରିଅଡ଼ରେ ଯୋଗ ଦେଲିବେଳେ ଅଳ୍ପ ଡେରି ହେଲା । ଆଜ ପୁଣି ନେବାକୁ ଇଚ୍ଛା ହେଉଛି । କିନ୍ତୁ କହି-ବାକୁ ଲାଜ ଲାଗେ । କଣ କରିବି କରିବ ଭାବି ପାରୁନି ।

କ୍ଲାସ ଛୁଟି ହେବାପରେ 'ମାତା ମହାକାଳୀ' ନାମରେ ହିନ୍ଦୀ ଫିଲ୍ମ ବସନ୍ତ ସିନେମା ହଲ୍‌ରେ ଦେଖିଲି । ବାବୁରାମ ଦେଖାଇଲା । ଟ୍ରେନରେ ଆସିଲି । ମୋ ସାଙ୍ଗ ସ୍ୱପ୍ନଲରର ବାପା ମୋତେ ପଚାରିଲେ ଯେ ଏତେ ଡେରି ହେଲା କାହିଁକି ? ମୁଁ କହିଲି ବଲ୍ ଖେଳ ଦେଖିଲି । ସେ ପଚାରିଲେ କାହାର କାହାର ଭିତରେ ଥିଲା ? ମୁଁ ଅଟକି ଗଲି । ମିଛ କହିଥିବାରୁ ମନେମନେ ଲାଜ ଲାଗିଲା ।

|| ୨୭ ସେପ୍‌ଟେମ୍ବର ୧୯୬୯ ଶନିବାର ||

ଦର୍ଶନ ବିଭାଗର ମୁଖ୍ୟଙ୍କୁ ପଚାରିଲି ଯେ, ତାଙ୍କୁ ପୁଣି ନେଇ ହେବନି ନାହିଁ ? ସେ କହିଲେ, ବର୍ତ୍ତମାନ ଆଉ ନେଇ ପାରିବ ନାହିଁ ।

|| ୨ ଅକ୍ଟୋବର ୧୯୬୯ : ଗୁରୁବାର ||

ଆଜ ଗାନ୍ଧିଜୀଙ୍କ ଜନ୍ମ ଶତବାର୍ଷିକୀ ।

ମା (ଆଶ୍ରମର) ମୋ ପାଖରୁ ୩୦୦ଟଙ୍କା ଗ୍ରହଣ କଲେ । ମହା'ଚନ୍ତାରେ ପଡ଼ିଛି ।

|| ୩ ଅକ୍ଟୋବର ୧୯୬୯ : ଶୁକ୍ରବାର ||

ଭାଲି ଘରରେ ଟଙ୍କା ବିଷୟରେ ଖୁବ୍ ଭାବୁଥିଲି । ଥରେ ଭାବିଲି ଦେବି, ଆଉ ଥରେ ଭାବିଲି ଏଇତ ମୋର ସମ୍ପତ୍ତି, ଦେବିନି । ଆଉଥରେ ଭାବିଲି ମା (ଯୋଗମାୟାଦେବୀ)ଙ୍କର ମାନ ସମ୍ମାନର ପ୍ରଶ୍ନ । ଦେବାକୁ ହେବ । ନା ! ତିନିଶହ ଟଙ୍କା କମ୍ ନୁହେଁ ! ମୋ ପାଖରେ ମୋଟ ୫୨୫୦ ହେବ ଅଛି । ଅବଶ୍ୟ

ଝିପରେ ଘୁମ ଉଠିଲି । ଗାଡରେ ଶୋଇ ପଡ଼ିଲି । ମା'ଙ୍କ ପାଇଁ (କାଳୀଙ୍କପାଇଁ) ବ୍ୟାକୁଳ ହେଲି ।

ସକାଳ (୬ଟା ୪୫ରେ) ଉଠିଲି । ଡେରି ହେବାରୁ ପାଇଖାନା ନଯାଇ ଚା' ଖାଇଲି । ଚା' ଖାଇ ଝାଡ଼ା ଗଲି ।

ଡାହାକୁ ନକହି ଶ୨ହ ଟଙ୍କା ନେଇଗଲି ମାଙ୍କୁ ଦେବାପାଇଁ । ବଡ଼ ବାସାର ଟ୍ରକରେ ଗଲି । ବପା ବି ଥିଲେ ।

ପ୍ରଥମ ପିରିଅଡ଼ ଭଗବାଗରେ ୨ୟ ପିରିଅଡ଼ ଲଜର । ଆଶ୍ରମକୁ ଗଲି, ମାଙ୍କ ଦେଖା ପାଇଲି । ନଡାଇକୁ ଦେଇ ଆସିଲି । ଉପେନ ମୋ ସହିତ ଆଶ୍ରମରେ ଥିଲା । ମା ମୋତେ ଗୃହା ସଷ୍ଟମ କରିବା ପାଇଁ ଗୋଟିଏ ରସିଦ୍ ବହି ଦେଇଛନ୍ତି । ମୁଁ ଘୋଳର ପୁଲସକୁ ଦେଇ ଦେଇଛି । ଜଣେ ପୁଲସ ସହିତ ତାହ୍ଲା ପରିଚୟ ହେଇଛି କେବଳ ଏହି କାରଣରୁ । ପୁଲିସଟା ଖୁବ୍ ଭଲ ଲୋକ । ମୁଁ ତାକୁ ଆଜ ଚା' ଖୋଇଛି, ଗୋପାଳ, ପ୍ରଣବ, ମାନିକ ଦା'ଙ୍କୁ ବି ଖୋଇଛି । ନନ୍ଦଲାଲକୁ କହିଲି, ସେ ଖାଇଲା ନାହିଁ ।

ସେ ଖରାପ ଭାବିଲା, ମହାବୀରର ସାଇକେଲ୍ ନେଇ ବଜାରକୁ ଗଲି । ଡେରି କରିବାରୁ ସେ ଖରାପ ଭାବିଲା । ସ୍ୱପ୍ନଲାଲ୍ ୩ଟା ବସରେ ଆସିବାର ଥିଲା କିନ୍ତୁ ୨ଟା୩୦ ବସରେ ଆସିଲା । ମୁଁ ସ୍ୱପ୍ନଲାଲକୁ ପୁଣି ଆଗଭଳି ଭଲ ପାଇବା ଆରମ୍ଭ କରିଛି ।

ମୁଁ ବର୍ତ୍ତମାନ (୮ଟା ରାତ୍ରରେ) ସ୍ୱପ୍ନଲାଲର ଆଶାରେ ଅଛି । ହାଟରେ ନାଟକ ହେବ । ସ୍ୱପ୍ନଲାଲ କହିଥିଲା, ମୁଁ ଆସିବି, କିନ୍ତୁ ବର୍ତ୍ତମାନ ଆସିନାହିଁ । (ରାତ୍ର ୮ଟା) ମୁଁ ମାଙ୍କୁ ପ୍ରାର୍ଥନା କରୁଛି, ତାକୁ ଆଣିବା ପାଇଁ । ସ୍ୱପ୍ନଲାଲକୁ ପାଇବାର ଇଚ୍ଛା । ଦେଖେଁ କେତେ ଦୂର କୃତକାର୍ଯ୍ୟ ହେଉଛି । ବର୍ତ୍ତମାନ ମୁଁ ପାଗଳ, ମୋର କାମନା, ବାସନା, ପ୍ରବଳ ହୋଇ ଅସିଛି । କଣ କରିବା କଣ ନ କରିବା ମୁଁ ହତାହତ ଜ୍ଞାନଶୂନ୍ୟ । ମୋର ବର୍ତ୍ତମାନ ସ୍ୱପ୍ନଲାଲ ଦରକାର, ଭଗବାନ ତୁମେ ନିଶ୍ଚୟ ଆଣ । ଏବମାତ୍ର ସ୍ୱପ୍ନଲାଲ ଅସିଲା, ମୋତେ ପଚାରିଲା 'ଯିବୁନା ?' (୮ଟା ୦୨) । ମୁଁ କହିଲି ହଁ ଯିବି । ସେ କହିଲା ମୁଁ ଘରୁ ଆସିବି ଘଣ୍ଟାଏ ପରେ । ମୁଁ କହିଲି, ନା ଅଧଘଣ୍ଟା ପରେ ଆସେ ? ସେ କହିଲା ଆଚ୍ଛା ! ମା ! ମୋତେ ଜ୍ଞାନ ଦିଅ । ମୁଁ ସ୍ୱପ୍ନଲାଲକୁ ଭଲ ପାଏ, ମୁଁ ସ୍ୱପ୍ନଲାଲକୁ ଚୁମ୍ବେ, ସ୍ୱପ୍ନଲାଲ ! ସ୍ୱପ୍ନଲାଲ ! କାଲି ମୁଁ ଏବଂ ସ୍ୱପ୍ନଲାଲ 'ସପନୋଁ କା ସୌଦାଗର' ଦେଖିବୁ । ପାଖରେ ପାଖରେ ବସିବୁ । ତାର ଲିଙ୍ଗକୁ ହାତରେ ଧରିବି । ଭଗବାନ । ଏଇ ସଂସାରଟା କି ! ମାୟା ମାୟା । ସତ୍ୟଟା କ'ଣ ଏଇଟା ମୋତେ ପାଇବାକୁ ହେବ ।

॥ ୨୬ ॥

ଅମେ ଅଜ କ୍ଲବ ପାଇଁ ଗୋଟିଏ ଘର ଠିକ୍ କରିଲୁ । ରବିବାର ଦିନ ସକାଳେ ଦେଖିବାକୁ ଯିବୁ । ଦେଖିବାକୁ ଯିବୁ ଆମେ 'ଅଗ୍ରଦୂତ' କ୍ଲବ ପାଇଁ ।

ବର୍ତ୍ତମାନ ମୋର ପଢ଼ା ପଢ଼ି ଏକଦମ୍ ବନ୍ଦ । କଣ କରିବି ମା ! କାଳୀ । ପୋଲ ଉପରେ ଯେଉଁ ଲୋକଟି ସହ୍ୱତ ବନ୍ଧୁତ୍ୱ କରିଛି । ତା ନାଁ ରାମଚରଣ ଦୁବେ । ଖୁବ ଭଲଲୋକ । କିନ୍ତୁ ମୁଁ ତାକୁ ଖୁବ ବେଶୀ ଭଲ ପାଏନା । କାହିଁକି ଜାଣେନା ।

ଖାଲି ଗଳ୍ପ ବହି ପଢ଼ୁଛି । ୮ଟା ୧୫ ହୋଇଛି, ସ୍ୱପ୍ନଲାଲର ଅପେକ୍ଷା କରୁଛି । ମା ! ମୋତେ ସୁବୁଦ୍ଧି ଦିଅ । ମୋର ଅକ୍ଷରର ଡିଜାଇନ୍ ଖରାପ । ପରି-ବର୍ତ୍ତନ କରିବି । ହରେରାମ ହରେ ହରେ । ଏଇ ପୃଥିବୀ ରସରେ ପରିପୂର୍ଣ୍ଣ । ତା ଭିତରେ କାମ ରସ ପ୍ରଧାନ । ତା'ପାଇଁ ପୃଥିବୀର ଅଧିକାଂଶ ମାନବ ବଞ୍ଚିଛନ୍ତି, ଜୟ ମା' କାଳୀ, ଈଶ୍ୱର !

ପଞ୍ଚାନନ ସିଗାରେଟ୍ ପାଇଁ ୧୦ ପଇସା ଦେଲି । ମା' ମୋତେ ରକ୍ଷା-କର, ଈଶ୍ୱର !

ସୁନ୍ଦର ସୁଖ ହିଁ ଜୀବନ । ସୁନ୍ଦର ଛଡ଼ା କାହାର ମୂଲ୍ୟନାହିଁ । ମୁଁ କିଏ ? ମୁଁ ! ପାଗଳ । ପାଗଳ କଣ ଜାଣେନା । ବର୍ତ୍ତମାନ କେବଳ ମୋର ଗୋଟିଏ ଚିନ୍ତା, ଦ୍ୱିତୀୟ ଚିନ୍ତା ନାହିଁ ।

୯ଟା ବାଜିଛି । ତଥାପି ଆସିନ କାହିଁକି । ବସି ବସି ସ୍ୱପ୍ନଲାଲର ଅପେ-କ୍ଷାରେ ଲେଖୁଛି । ସମସ୍ତ ୮ଟା ୫୦, ସ୍ୱପ୍ନଲାଲ ଆସିଲେନି । ପଜମ୍ରା ମାଡ଼ୁଛି । କିନ୍ତୁ ଯିବାକୁ ଇଚ୍ଛା ହେଉନି ।

ଏଇଥିପାଇଁ କେଜାଣି ସ୍ୱପ୍ନଲାଲ ଆସିପାରେ । ହରେ କୃଷ୍ଣ, ସ୍ୱପ୍ନଲାଲଙ୍କୁ ଡାକ । ପ୍ରଭୁ ଦୟାକର । ଦୟାମୟ ତ ସବୁ । ବାଜା ଶୁଭୁଛି । କିନ୍ତୁ ସ୍ୱପ୍ନଲାଲ ଆସୁନାହିଁ । ମୁଁ ବିରହ ଯନ୍ତ୍ରଣାରେ ମରି ଯାଉଛି । ଦୟାମୟ ରକ୍ଷାକର ! ଈଶ୍ୱର ଦୟାକର, ଦୟାମୟ ଦୟାକର । ତୁମବିନା କେହି ନାହିଁ ମୋର । ପ୍ୟାରି ସ୍ୱପ୍ନଲାଲ 'ଜାନ ସେ ଭି ପ୍ୟାରି ସ୍ୱପ୍ନଲାଲ' । ତୁମେ ବର୍ତ୍ତମାନ ଆସୁନା କାହିଁକି ? ମୁଁ ତୁମର ବିରହ ଆଉ ସହ୍ୟ କରି ପାରୁନି ।

॥ ୪ ଅକ୍ଟୋବର ୧୯୬୯ : ଶନିବାର ।

ଆଜି ମନ ପ୍ରାଣ ସବୁ ଶାନ୍ତ । ଆଜି ୯ଟା ୧୫ରେ କ୍ଲାସ ଥିଲା । ସେଥିପାଇଁ ମୁଁ ଶୀଘ୍ର ଖାଇପିଇ (ଆଜି ମୋର ବୁଢ଼ୀମାର ମୃତ୍ୟୁତିଥି ଥିଲା) କାଲି ତିଆରି ହୋଇଥିବା ଗୋଟିଏ ରୁଟିକୁ ଖାଇଗଲି । ଅରେ ସ୍ୱପ୍ନଲାଲ ପ୍ରଥମ ପିରିଅଡ଼୍କୁ ଗ୍ରୁଡ଼ିଫ୍ରେନରେ ସ୍ୱପ୍ନଲାଲର ସହିତ ଯିବ । (ସ୍ୱପ୍ନଲାଲଙ୍କୁ ପୁଣି ଭଲ ପାଇବା ଆରମ୍ଭ-

ଯାଉଛୁ) ତାପରେ ଶୁଣିଲି ଯେ, କ୍ଲାସ ନ କରିବା ଭଲ ନୁହେଁ । ସେଥିପାଇଁ ୮ଟା ୧୫ ବସରେ ଗଲି । ବାଲକନରେ, ହାରୁଲାଲ ସହିତ ଦେଖା ହେଲା । ଆଜ ବାଲକନର ହାଟ, ସେଥିପାଇଁ ସେ ଝୋଟ କିଣୁଥିଲେ । ୧୦ଟା ବସରେ ଯିବ ବୋଲି କହିଲ ।

ମୁଁ ଥିବ୍ଲକକୁ ଯେଉଁ ବସରେ ଯାଉଥିଲି ସେଇ ବସଟି ବସ ଇଘର ସମ୍ପାଦକଙ୍କର ଥିଲା । ଆଉ ସେଇ ଲୋକ ଜଣକ ସେଇ ବସରେ ଥିଲେ । ମୁଁ କମ ଭଡ଼ା ଦେବାକୁ ଚାହିଁଲି, କିନ୍ତୁ ସେ କହିଲେ ଯେ ଆପଣଙ୍କର କ ପ୍ରମାଣ ଅଛି ଯେ ଆପଣ କଲେଜର ଛାତ୍ର । ମୁଁ ମୋ ସ୍ୱୀକୃତି ପତ୍ର ଦେଖାଇଲି । ସେ କହିଲେ ଯେ ଏଇଟି ଯେ କୌଣସି ଲୋକ ଆଣି ପାରେ । କିନ୍ତୁ ଶେଷରେ ୫୧. ୫୫ ପଇସା ଯାଗାରେ ୭୫ ପଇସା ନେଲେ ।

ପ୍ରଥମ କ୍ଲାସ ଥିଲା ଦର୍ଶନ ଶାସ୍ତ୍ର । ଦ୍ୱିତୀୟଟି ଇଂରାଜୀ ଥିଲି । ତାପରେ ଫିରଅଡ଼ ଲଜର । ସେଥିପାଇଁ ମୁଁ, ଗୋବିନ୍ଦ, ଗୋପାଳ ଆଉ ନନ୍ଦଲାଲ ଆଶ୍ରମକୁ ଗଲୁ । ମାଙ୍କ ସହିତ ଦେଖା ହେଲା । ମୁଁ ତାଙ୍କୁ କହିଲି ଯେ ମୋର ଏକାଗ୍ରତା ଆସୁ ନାହିଁ । ସେ କହିଲେ ଯେ ଅଳ୍ପ ଦିନ ଭିତରେ ଆସିବ । ତୁମ ଉପରେ ମା (କାଳୀ) ସନ୍ତୁଷ୍ଟ ଅଛନ୍ତି । ଆଗେ ତୁମେ ଗୋଟିଏ ଜ୍ୟୋତି ଦେଖିବାକୁ ପାଇବ । ଆଉ ତାପରେ (ମାକାଳୀଙ୍କୁ) ପାଇବ । ମା ରବିବାର ଆସିବାକୁ କହିଲେ । ଆଉ ମୁଁ କହିଲି, ଚେଷ୍ଟା କରିବ ।

ତାପରେ ଆମେ ସିନେମା ଦେଖିଲୁଁ । 'ସପନୋଁ କା ସୌଦାଗର' ନାମ ଖୁବ୍ ଭଲ ଥିଲା ମୂଳକଥାଟି 'ଆତ୍ମବିଶ୍ୱାସ' ଆଉ 'ଅପେକ୍ଷା' । ହାରୁଲାଲ ଆଉ ପ୍ରଣବ ମୋ ପାଖରେ ବସିଥିଲେ ।

ଗାଡ଼ି ଚନ୍ଦ୍ରନ୍ଦ୍ର ଷ୍ଟେସନରେ ଛାଡ଼ିଲା । ଗୌରୀପୁରରେ ଅଧଘଣ୍ଟାରୁ ବେଶୀ ଡେରି କଲା । ମୁଁ, ନନ୍ଦଲାଲ, ଗୋପାଳ, ହାରୁଲାଲ ବହୁତ ଥଟ୍ଟା, ତାମସା କରି ସାରା ରାସ୍ତା ଶେଷ କଲୁ ।

ରାମନାରାୟଣ ସହିତ ଦେଖା ହେଲା । ସେ କାଲି ମୋ ଘରକୁ ଧର୍ମ ବିଷୟରେ ଆଲୋଚନା କରିବାକୁ ୩ଟା ବେଳେ ଆସିବେ । ମୁଁ ଘରେ ରହିବି ବୋଲି କହିଲି ।

ବାଦଲ ସହିତ ଦେଖା ହୋଇଥିଲି । ସାରାଦିନ ଆନନ୍ଦରେ କଟିଥିଲା ।

( ମୁଁ ରାତିରେ ସ୍ୱପ୍ନ ଦେଖିଛି ଯେ ଧ୍ୟାନ କରୁ କରୁ କାଳୀମାଙ୍କୁ ଦେଖିବାକୁ ପାଇଲି । କାଳୀ ମୋତେ ପଚାରିଲେ ତୁମେ କଣ ଚାହଁ ? ମୁଁ କହିଲି ଯେ ମୁଁ କେବଳ ତୁମକୁ ଚାହେଁ । ମୁଁ ଯେତେବେଳେ ତୁମକୁ ଡାକିବି ତୁମେ ସେତେ ବେଳେ ଆସିବ । ମୁଁ ସ୍ୱପ୍ନରେ ଆନନ୍ଦରେ, ଖୁବ୍ ବିହ୍ୱଳ ହୋଇ ଯାଇଥିଲି ।)

ମୋତେ କହିଲେ ଯେ ଭୂତରେ ସବୁକିଛି ଠିକ୍ ଅଛି, କିନ୍ତୁ ମୁଣ୍ଡ ଠିକ୍ ନାହିଁ । ମୁଁ ସ୍ୱପ୍ନରେ ମା ଯୋଗମାୟା ଦେବୀଙ୍କୁ ଦେଖିଥିଲି ।)

॥ ୫ ଅକ୍ଟୋବର ୧୯୬୯ : ରବିବାର ॥

ଆଜି ମୁଁ ସମନାରାୟଣଙ୍କୁ ମୋର ଡାଲିଭାଣ୍ଡ, ମନ୍ତ୍ରଜପ, ସ୍ୱପ୍ନ ଦେଖିବା ଆଦ ସବୁ କଥା ଖୋଲି କହିଦେଲି । ଆଉ ମୁଁ କାହାକୁ କହିବ ନାହିଁ, ଗୁରୁଙ୍କୁ ଛାଡ଼ି । ଗତରାତ୍ର ସ୍ୱପ୍ନରେ କିଛି ଦେଖିନାହିଁ । ଆଜି ରାମକୃଷ୍ଣଙ୍କ ଉପଦେଶାବଳୀ ସବୁ ପଢ଼ିଲି ।

॥ ୬ ଅକ୍ଟୋବର ୧୯୬୯ : ସୋମବାର ॥

ଶନିବାରର କଥା । ମୋର କ୍ଲାସ୍‌ମେଟ୍ ଉପେନ୍ ସାହୁ, ଆଉ ଖ୍ୱାଗଲାଲ ବା ଜନକୁ ପନାହାଟ ଲାଇନର ବସ୍‌ରେ ଉଠିଲେ । ସେମାନେ ଏଗ୍ଜାମ୍ ଦେବାକୁ ଯାଉଥିଲେ । କିନ୍ତୁ କନସେସନ୍ କଣ୍ଡକ୍ଟର ଦେଲାନାହିଁ । ଡ୍ରାଇଭର କହିଲାଯେ ଆପଣ ବେଜନ୍ଯମ ଭାମ କରୁଛନ୍ତି । ସେତେବେଳେ ଉପେନ୍ କହିଲେ ଯେ ଆପଣଙ୍କ ବେଶୀ ଯାତ୍ରୀ ନେଇ ଅନ୍ୟାୟ କରୁଛନ୍ତି । ତାପରେ ସେ ଉପେନକୁ କହିଲେ ଆମେ କେତେବେଳେ 'ଓଭର୍‌ଲୋଡ୍' ନେଉନା । ଆଉ ଆପଣ ମାନେତ ଅଧିକାଯାତ୍ରୀ ହୋଇ ଉଠିଛନ୍ତି । ତାପରେ ଉପେନ, ଆଉ ଖ୍ୱାଗଲାଲ ଓହ୍ଲାଇ ପଡ଼ିଲେ । ତାପରେ ସେମାନେ ତା'ପର ବସରେ ଉଠିଲେ । ଧୁରୁର ବର୍ଓସି ପେଟ୍ରୋଲ ପମ୍ପରେ ଆସି ସେମାନେ ଦେଖିଲେଯେ ସେଇ ବସ୍‌ଟି 'ଓଭର୍‌ଲୋଡ୍' ନେଉଛି । ଖ୍ୱାଗଲାଲ ଜୋରରେ ଆଉ ଗୋଟିଏ ପିଲାକୁ କହିଲା ଯେ ଆଜି ଡ୍ରାଇଭର ସହିତ ପିଟାପିଟି ଲାଗିବ । ଡ୍ରାଇଭର ଏଇ କଥା ଶୁଣି ପାରିଲା ଆଉ ଖ୍ୱାଗଲାଲକୁ କହିଲା, ଗୋଟିଏ ଚାପୁଡ଼ାରେ ଦାନ୍ତ ଖସାଇ ଦେବି । ସେତେବେଳେ ଯାତ୍ରୀମାନେ ଆଉ ମାଡ଼ଗୋଳ କରିବାକୁ ଦେଲେ ନାହିଁ ।

ଆଜି (ସୋମବାର) ଖ୍ୱାଗଲାଲ ଉପେନ, ମେହେରୁବ, ଆଦ ପିଲାମାନେ ବାଲିଜାନରେ ନଅଟାବେ ସେଇ ଡ୍ରାଇଭରକୁ ମାରିବାକୁ ଏକାଠି ହେଲେ । କିନ୍ତୁ ଗାଡ଼ିଟା ୯ଟା ପୂର୍ବରୁ ଚାଲିଯାଇଥିଲା ।

କଲେଜ ଛୁଟି ପରେ ମୁଁ, ଖ୍ୱାଗଲାଲ, ଉପେନ, ଶଶଧର, ଜଗଦୀଶପେନ, ମେହେରୁବ (ପି.ଡ଼ି କଲେଜରୁ), ଟାଙ୍କରାମ, ନରେନ, ଆଦ ୧୦।୧୨ ଜଣ ପିଲା ଗୌଷ୍ଟପୁରକୁ ଆସି ଏକାଠି ହେଲୁ । ୫।୧୫ମିନଟ୍‌ରେ ବସଟା ଗୌଷ୍ଟପୁରକୁ ଆସିଲା । ଆମେ ବସରେ ଉଠିଲୁ । (ମୁଁ ମାଡ଼ଗୋଳ ଭଲ ପାଏନା, କିନ୍ତୁ ବାଧ୍ୟ ହୋଇ ସେମାନଙ୍କ ସହିତ ରହିବାକୁ ପଡ଼ିଲା ।)

କୌଶଲ୍ୟାରୁ ୧ ମାଇଲ ଯିବାପରେ ଆମେ ଡାକ୍ତରଙ୍କୁ ଅଟକାଇଲୁ । ଡ୍ରାଇଭର୍ କି କ୍ଷମା ନ ମାଗି ବାଡ଼ିର ହ୍ୟାଣ୍ଡେଲ ବାହାର କରି ପିଲାମାନଙ୍କୁ ମାରିବାକୁ ଛୁଟିଲା । ମେଡିକେଲର ଛାତ୍ର ହ୍ୟାଣ୍ଡେଲଟା ଧରି ଦେଲା । ତା'ପରେ ତାକୁ ସମସ୍ତେ ମାରିବାକୁ ଆରମ୍ଭ କଲେ । ମୁଁ ଆଉ ଅରୁଣୀ ନାଆଁର ଜଣେ ପିଲା ଦୂରକୁ ଘୁଞ୍ଚିଗଲୁ । ମୁଁ କେବଳ ଜୋରରେ ବାଡ଼ିବା ଶୁଣିବାକୁ ପାଇଲି । ରକ୍ତ ଦେଖି ପିଲାମାନେ ଆଉ ମୁଁ ସେମାନଙ୍କ ସହିତ ପଳାଇଲୁଁ । ହଟ୍ଟଗୋଳ ଚାଲି । ଆମେ ବାଲି, ବାଡ଼ି ଭିତରେ ଭିତରେ ପଳାଇବାକୁ ଲାଗିଲୁ । ଅନେକ ଦୂର ଗଲୁ । ଶୋଷରେ କଣ୍ଠ ଶୁଖିଗଲା । ଗୋପାଳପୁର କଲେଜର ଜଣେ ପିଲାର ଘରେ ପାଣି ପିଇ ପୁଣି ଚାଲିବାକୁ ଆରମ୍ଭ କଲୁ । ତା'ପରେ ମେନ୍ ରୋଡ଼ରେ ଉଠି ବାଲିଜନ ପର୍ଯ୍ୟନ୍ତ ଚାଲି ଚାଲି ଆସିଲୁ । ରାତି ହୋଇ ଯାଇଛି । ଘରେ କ'ଣ କହିବି । କ'ଣ ହେବ, ନହେବ ! ମନ ଧକ୍ ଧକ୍ ହେଉଛି । ବାଲିଜନରୁ ଗୋଟିଏ ଟ୍ରକ୍‌ରେ ଉଠି ଗୋଲକ୍ ଚକ୍ର ଆସିଲୁ ।

।। ୭ ଅକ୍ଟୋବର ୧୯୬୯ ମଙ୍ଗଳବାର ।।

ଆଜି ସକାଳର ମନ ଖୁବ୍ ଅଶାନ୍ତ ଲାଗୁଛି । ମନ ଖୁବ୍ ଖରାପ ଡ୍ରାଇଭର ପାଇଁ । ଟ୍ରେନରେ କଲେଜ ଗଲି । ଗୋଟିଏ ପିରିଅଡ୍ ହେଲା । କଲେଜର ସ୍ପୋର୍ଟ ପାଇଁ ଛୁଟିଦିନ ହେଲା । ଆମେ ସବୁ ଗୋଟିଏ ବସରେ ଛୁଟିଲୁ । ବସର ନାମ 'ଶ୍ରୀ' । ଆମେ କନ୍‌ଭେନସନରେ ଦେଖାକୁ ଗୁହିବାକୁ ସେ ନେଲାନାହିଁ । ବହୁତ ଯୁକ୍ତିତର୍କ ଲାଗିଲା ।

ସନ୍ଧ୍ୟାରେ ବୁଲିବାକୁ ଗଲି । ମୁଁ; ଗୋପାଳ, ମଣି ଦା, ପ୍ରଣବ ଆଉ ଥିଲୁ । ବର୍ତ୍ତମାନ ମୋର ମନ ହ୍ୱାବଲାଲ ପ୍ରତି ବିରକ୍ତ । ତାକୁ ଅଳ୍ପ କାଳ ପ୍ରାୟ ମୁଁ ଭଲ ପାଏନା । ତା'ର ବୁଦ୍ଧି ଯଳ୍ପ କମ୍ ଅଛି । ରାସ୍ତାରେ ବଡ଼ଭାଇ ମୋତେ କହିଲେ ଯେ ତୁମେ ଚାରି ପାଞ୍ଚଦିନ କଲେଜ ଯିବା ବନ୍ଦ କର, ଏଇ ଗଣ୍ଡଗୋଳ ପାଇଁ । ବହୁତ ଗରମା ଗରମ ଚାଲିଛି ।

।। ୮ ଡିସେମ୍ବର ୧୯୬୯ : ବୁଧବାର ।।

କଲେଜକୁ ଯିବାର ଇଚ୍ଛା ନଥିଲା । କିନ୍ତୁ 'ଗ୍ରୁପ ସରଣ'ର ତରଫରୁ ଅମ୍ଭଙ୍କୁ ଆଣିବାକୁ ଗାଡ଼ି ପଠାଇ ଦେଲେ । ସେଥିପାଇଁ ଗଲୁ । ଷ୍ଟେଟରେ ବେଶୀ ମୋର ଆଗ୍ରହ ନାହିଁ । କାହିଁକି ନା ଯେଉଁମାନେ ଠିଆ ହୋଇଛନ୍ତି, ସେମାନଙ୍କ ବିଷୟରେ ମୁଁ ବିଶେଷ କିଛି ଜାଣେନା ।

ଧୂବୁଶରେ ମାଡ଼ଗୋଳ ପାଇଁ ଖୁବ୍ ଗରମା ଗରମ ଚାଲିଛି । ମୁଁ ଗୋବିନ୍ଦକୁ ଯୋଗମାୟା ଦେବୀଙ୍କର ସେଇ ରସିଦ ବହିଟି ଦେଇ ଆସିଲି ।

॥ ୯ ଡିସେମ୍ବର ୧୯୬୯ ଗୁରୁବାର ॥

ଡ଼ାକ୍ତରଙ୍କର ଅଦ୍ଭୁତ ଆଘାତ ପାଇଛି । ଗୁଣଲେଖି ମୁଣ୍ଡରେ ଶାଳ ଗୁଡ଼ାଇ ମୁଁ ଭୟ ପାଇଁ ଆଜି କଲେଜକୁ ଯାଇନ । ଛାତ୍ର ପରଶୁରାମ କରୁଛନ୍ତି । ସାଧାରଣ ସମ୍ପାଦକ ନାଆଁ ପ୍ରୋଫେସର ହଡ଼ିନ ଦ୍ୱାରା ।

ଡାଇରେକ୍ଟରଙ୍କୁ ମାରିଥିବା ଛାତ୍ରମାନଙ୍କୁ ଧରିବା ପାଇଁ, ମୋର ଆଜି କ୍ଲାସ ହୋଇନ । ଜାଣିନି ନା କାହିଁକି ପନ୍ଦର ଦିନର ଛୁଟି ହେଲା । ଅଜି ମୋ କ୍ଲାସଥିଲା ୨୧ । ୧୦ ପରେ ।

ସ୍ୱପ୍ନରେ ଦେଖିଲି ଯେ, ଯୋଗମାୟା ଦେବୀ ଉଦ୍ଭବ ହେଲେ, ଯଦି ତୁମେ ତୁମର ଶକ୍ତିକୁ ହଟାଇଦେବ ତାହେଲେ ତୁମକୁ କାଳୀ ଦେଖାଦେବେ । ମୁଁ କହିଦେଲି ଯେ ଯେଉଁ କାଳୀ ମନ୍ଦିରର ଭକ୍ତ ଅଛନ୍ତି, ମୁଁ ସେହିପରି କାଳୀଙ୍କୁ ଚାହେଁନା । ସ୍ୱପ୍ନରେ ବୋଧେ ମୋତେ ପରୀକ୍ଷା କରିବା ପାଇଁ ଏହି ପ୍ରଶ୍ନ ପଚରା ହୋଇଥିଲା ।

॥ ୧୦ ଡିସେମ୍ବର ୧୯୬୯ ଶୁକ୍ରବାର ॥

ଆଜି ସକାଳ ଆଠଟା ଘଣ୍ଟେ ବେଳେ, ଉପେନ୍ ଆଉ ସ୍ୱର୍ଗଲାଲ ଆସିଲେ । ସେଠାରେ ଉପେନ ରାଂଚିରେ ପୋଲିସ ଧକ୍କା ଦେଇଥିଲେ ଓ ଉପେନ୍‌କୁ ଗୋଟିଏ କାଗଜରେ ଦସ୍ତଖତ କରାଇ କାର୍ଯ୍ୟରେ ଛାଡ଼ି ଦେଲେ । ଆଉ କହିଲେ ୮।୧୨ ଜଣଙ୍କର ନାମ ଥିଲା । ଉପେନ କହିଲା ମୁଁ ହୋଇଛି ଯେତେବେଳେ ସେତେବେଳେ, ଯେଉଁ ନାଆଁ ସବୁ ଲିଷ୍ଟରେ ନାହିଁ, ସେଇ ମାନଙ୍କର ନାଆଁ ଲେଖାଇଦେବ ।

ସ୍ୱର୍ଗଲାଲ୍‌କୁ ମୁଁ ବର୍ତ୍ତମାନ ଖୁବ ଘୃଣା କରୁଛି । ଅରବିନ୍ଦଙ୍କର ଜୀବନୀ ପଢ଼ା ଶେଷ କରିଲି । ମୁଁ ମା କାଳୀଙ୍କୁ ଖାଲି ଦେଖିବାକୁ ଚାହେଁ ।

ଆଜି ସକାଳେ ମୁଁ ଉପେନ ଆଉ ସ୍ୱର୍ଗଲାଲ କବୀର ମାଷ୍ଟରଙ୍କ ଘରକୁ ଯାଇ ଏହି ବିଷୟରେ ଆଲୋଚନା କରିଲୁ କ'ଣ କରିବାକୁ ହେବ । କବୀର ବାବୁ କହିଲେ "ମୁଁ ତୁମ ମାନଙ୍କୁ କଲେକ୍ଟରଙ୍କ ପାଖକୁ ନେଇଯିବି ।"

କଲେଜ ଯାଇବା ଆରମ୍ଭ ହେବାର ଉପରେ । ପରେ ଶୁଣିଲି ଯେ ଆମେ ଯେତେ ସବୁ ପିଲା ଯିବା ଆସିବା କରୁ, ଏବଂ ଗୋଲକ ରଞ୍ଜନ ସବୁ ପିଲାଙ୍କ ନାଆଁ ଦିଆ ହୋଇଛି । କଲେକ୍ଟର ଏସ୍. ପି.ଙ୍କୁ କହିଲେ ଯେ ପିଲା ମାନଙ୍କର ପରୀକ୍ଷା ହେବ । ସେଥିପାଇଁ ସେମାନଙ୍କୁ ହଇରାଣ କରିବେ ନାହିଁ । ଆମ ମାନଙ୍କର ଯୁବଜନ ପ୍ରେସିଡେଣ୍ଟ ଆସୋସିଏସନ ସଙ୍ଗେ ଦେଖାକଲେ । ଏଉ ସେମାନେ ଆପୋଷରେ କଥା ତୁଟାଇଦେବାକୁ ରାଜି ହେଲେ । ମୋ ମନରୁ ଈର୍ଷା ଦୂର ହୋଇ ଯାଇଛି । ଜୟ ମା କାଳୀ ତୁମ ସନ୍ତାନ ଅଡ଼କୁ ସବୁବେଳେ ତୁମର ଶୁଭ ଦୃଷ୍ଟି ଅଛୁ ।

ଭୁଟାନ୍ ଟ୍ରେନ୍ ଯନ୍ତ୍ର ଟୋଠେ ଆଜି ଖୁନ୍ତୁରି ନ ଯିବା ଯୋଗୁଁ "ଘୁରୁ, ଫିରୁ" ଆଦି ଆଖ୍ୟା ଦେଲେ ।

॥ ୨୮ ଅକ୍ଟୋବର ୧୯୬୯ : ମଙ୍ଗଳବାର ॥

ମୁଁ ଆଜି ଅନେକଦିନ ପରେ ପୁଣି ଡାଇରି ଲେଖୁଛି । ମୋର ବର୍ତ୍ତମାନ ପ୍ରଧାନ ଚିନ୍ତା ମା କାଳୀଙ୍କ ଦେଖା କେମିତି, କେଉଁଦିନ ପାଇ ପାରିବି । ଜ୍ଞାନରେ ପଣ୍ଡିତି ଏତେ ଦାମ୍ ଦେଉନି । ଧର୍ମ କର୍ମର ବନ୍ଧଫନ୍ଦ ପାଇଲେ ପଡ଼େ ।

ମଣିଷଙ୍କୁ ହିଂସା କରିବା ଆସ୍ତେ ଆସ୍ତେ କମୁଛି । କିଛିଦିନ ଆଗେ ଭକ୍ତି ବଢ଼ିଥିଲା । ଏହା ଭିତରେ ଦିନେ ଯୋଗମାୟା ଆଶ୍ରମକୁ ନନ୍ଦଲାଲ ସହିତ ଯାଇଥିଲି । ମା'ଙ୍କ ସହିତ ଦେଖା ହୋଇଥିଲା । ମା' କହିଲେ, "ଅତି ଶୀଘ୍ର ମା କାଳୀଙ୍କୁ ଦର୍ଶନ କରିବୁ । ସବୁ ମା'ର ଦୟା । ମୁଁ ତ ଜଣେ ନିମିତ୍ତ ମାତ୍ର ।"

॥ ୨୯ ଅକ୍ଟୋବର ୧୯୬୯ : ବୁଧବାର ॥

ଦିନେ ଦୁଇଦିନ ହେଲା ଦୌଡ଼ାଦଉଡ଼ି ହେଉନାହିଁ । ଭକ୍ତି ବି କମି ଯାଇଛି । କ୍ରିକେଟ ଖେଳ ଆରମ୍ଭ କରିଛି । ମୁଁ କାଲି ପ୍ରଥମ ଦିନରେ କ୍ରିକେଟ ବିଷୟରେ ଅନେକ କିଛି ଶିଖିଲି, କେବଳ ମା'ଙ୍କ କୃପାରୁ । ମୁଁ ବୋଧହୁଏ ଆଶ୍ରମଟେରାସରେ ବସି ବସି ମନ୍ତ୍ରଜପ କରିଥିଲି ।

॥ ୩୦ ଅକ୍ଟୋବର ୧୯୬୯ : ଗୁରୁବାର ॥

ଘଟଣାଟି ମୋର ଅର୍ଦ୍ଧ ସୁପ୍ତ ଅର୍ଦ୍ଧ ନିମ୍ନବର୍ଣ୍ଣିତ ଜାଗ୍ରତ ଅବସ୍ଥାରେ ଘଟିଥିଲା । ଖିଆବେଳେ ଶୋଇବା ଆଗରୁ ଏକ ମନ କରି ନାମ ନେଇ ଶୋଇ ପଡ଼ିଥିଲି । ସ୍ୱପ୍ନ ଦେଖିଲି, ମୁଁ କମ୍ପୁଛି । ଏମିତି ମନେ ହେଲା ଯେ, ମା'କାଳୀ ଆସି ମୋ ପଛରେ ଛିଡ଼ା ହୋଇଛନ୍ତି । ଗୋଟିଏ କଳା ହାତ ମୋ ମୁଣ୍ଡ ଆଗରେ ଦେଲେ । ସ୍ୱପ୍ନ ଭିତରେ ବି ମୋ ମୁହଁ ଭିତରୁ ଜିଭ ବାହାର ହୋଇଗଲା ।

ସ୍ୱପ୍ନରେ ଏମିତି ଶୁଣି ପାରିଲି "ଆଗେ ନିଜକୁ ଠିକ୍ କର ।" ଆକାଶରେ ବିଦ୍ୟୁତ୍ ପରି କ'ଣ କ'ଣ ଦେଖିଲି, ଆଉ ମନେ ହେଲା ସବୁକିଛି ଭାଙ୍ଗି ଭାଙ୍ଗି ପଡ଼ୁଛି । ମୁଁ ମା'ଙ୍କୁ କହିଲି, "ପ୍ରଥମେ ତୁମର ସୃଷ୍ଟିମୂଳକ ଶାନ୍ତ କାର୍ଯ୍ୟ ସବୁ ଦେଖାଅ ।" ମୁଁ ସ୍ୱପ୍ନରେ ଜୋର କରି ଚକ୍ଷୁ ଖୋଲିବାକୁ ଚାହିଁଥିଲି, କିନ୍ତୁ ପାରିଲି ନାହିଁ । ଏଥିରୁ ମୁଁ ଏଇଟା ବୁଝିପାରିଲି ଯେ ଆମର କୌଣସି ଶକ୍ତି ନାହିଁ, ସବୁ କିଛି ଭଗବାନ କରାଉଛନ୍ତି ।

|| ନଭେମ୍ବର ୧, ୧୯୬୯ : ଶନିବାର ||

ଆଜି ମୁଁ ଧୁବୁରି ଗଲି, ଯୋଗମାୟା ଦେବୀଙ୍କ ସହ ଦେଖା କରିବାକୁ । କିନ୍ତୁ ତାଙ୍କର ଦେଖା ପାଇଲି ନାହିଁ । କାରଣ ତାଙ୍କର ଜଣେ ଭକ୍ତ ତାଙ୍କୁ ବୁଲିବାନି ପାଇଁ ଗୌହାଟୀ ନେଇଯାଇଛନ୍ତି ।

ନିତାଇ ଜୀଙ୍କ ସହିତ ଅନେକ ସମୟ ଧରି ଧର୍ମାଲୋଚନା କରିଲି । ତାପରେ ଜିଲ୍ଲା ପାଠାଗାରରୁ ଦୁଇଟା ବହି ଆଣିଲି ।
୧- "ଶ୍ରୀ ଶ୍ରୀ ରାମକୃଷ୍ଣ ଦେବଙ୍କ ଉପଦେଶାବଳି" ୨- "ରାମ ପ୍ରସାଦ" । ଗୋଟିଏ ମୋ ପାଇଁ ଆଉ ଗୋଟିଏ ବାବୁରାମ ପାଇଁ ।

|| ୪ ନଭେମ୍ବର ୧୯୬୯ : ମଙ୍ଗଳବାର ||

ନନ୍ଦଲାଲ କହିଲା ଯେ ଆଜି ଆମର ଏଠାକୁ ଜଣେ ସାଧୁ ମହାତ୍ମା ଆସୁଛନ୍ତି । ସେ କିଛି ଖାଆନ୍ତି ନାହିଁ, କିନ୍ତୁ ପାଣି ଉପରେ ଚାଲିପାରନ୍ତି । ସେ ଗୋଟିଏ ଟ୍ରେନ୍‌କୁ ଅଟକାଇ ଦେଇଥିଲେ ନିଜ ଯୋଗଶକ୍ତି ଦ୍ୱାରା । ଏସବୁ ଶୁଣି ମୋର ସେଇ ସାଧୁଙ୍କୁ ଦେଖିବାପାଇଁ ଖୁବ୍ କୌତୁହଳ ହେଲା । ମୁଁ ଆଉ ଅରୁଣ ମଜୁମ୍‌ଦାର ଆଜି ସନ୍ଧ୍ୟା ପରେ ଖାଇବା ପରେ ଗଲୁ । ଅରୁଣ କହିଲା ତାକୁ ଖୁବ୍ ଭୋକ ଲାଗୁଛି । ଅରୁଣକୁ ଗୋଟିଏ ପାଆ ଦୁଧ ଖାଇବାକୁ ଦେଲି ।

ସେଇ ସାଧୁ ଜଣକ ଟିଲା ଉପରେ ବରଗଛ ତଳେ ଆଗରେ ନିଆଁ ଲଗେଇ ବସି ବସି ଧ୍ୟାନ କରୁଥିଲେ । ତାଙ୍କ ପାଖରେ ରାଜ ନାରାୟଣ ବସିଥିଲେ । ଆମେ ତାଙ୍କ ପାଖକୁ ଯାଇ ବସିଲୁ । ରାଜ ନାରାୟଣ (ନନ୍ଦଲାଲର ବାପା) ତାଙ୍କର ଗୁଣ ବର୍ଣ୍ଣନା କରିବାକୁ ଲାଗିଲେ । କିଛି ସମୟ ପରେ ପ୍ରଧାନୀ (ଭୁବନଚନ୍ଦ୍ର ପ୍ରଧାନୀ) ଆସିଲେ । ପ୍ରଧାନୀ ଆସିବାରେ ରାଜ ନାରାୟଣ ଆମକୁ କହିଲେ ଯେ ଆମେ ଯିବା, ବର୍ତ୍ତମାନ ପ୍ରଧାନୀ ବାବୁ କଥାବାର୍ତ୍ତା କରିବେ । ଆମେ ପ୍ରଧାନୀଙ୍କ ଉପରେ ମନେ ମନେ ବିରକ୍ତ ହୋଇ ଚାଲି ଆସିଲୁ ।

ରାସ୍ତାରେ ରାଜନାରାୟଣ ଆମକୁ କହିଲେ, "ତୁମେ ରାତିରେ ଆସିଲେ ତୁମକୁ କଥାବାର୍ତ୍ତା କରାଇ ଦେବ ।" ମୁଁ କହିଲି, "ରାତିରେ ତ ଅସୁବିଧା ହେବ । ମୁଁ କାଲି ଖୁବ୍ ସକାଳେ, ମାନେ ୩ଟାରେ ଯିବି" ।

ମୁଁ ମାଙ୍କ ନାମ ନେଇ ନେଇ ରାତିରେ ଶୋଇ ପଡ଼ିଲି, ସକାଳେ ୩ଟାରେ ଉଠିବାକୁ ସ୍ଥିର କଲି ।

|| ୫ ନଭେମ୍ବର ୧୯୬୯ : ବୁଧବାର ||

୩ଟାରେ ଉଠିଲି, ସେତେବେଳକୁ ରାତି ଅଛି । ଆମ ଘରର ମିଶିରକୁ ଉଠାଇଲି,

ଅଉ ପେଛି ପାଖ ଟେହ୍ ଦେଇ ବାହାରକୁ ଗଲି । ନନ୍ଦଲାଲର ଘରବୁ ସାଇ ନନ୍ଦଲାଲକୁ ଉଠାଇଲି ଆଉ ସୈଶିରକୁ ବଦା କରଦେଲି । ନନ୍ଦଲାଲ ଆଉ ମୁଁ ସେଠାର ସାଧୁ ନିକଟକୁ ଗଲୁ । ଆଗକୁ ଯିବାରୁ ସାଧୁଜଣଙ୍କ ଆମକୁ ଯିବାପାଇଁ ଇଶାରା କଲେ । ପୋଲ ଉପରର ଗାର୍ଡ଼ କହିଲା, 'ରାମ୍ଭମେ ନାହେ ଆସ୍ୟାହେ' । ଆମେ ଅପମାନିତ ହୋଇ ଚାଲି ଆସିଲୁ । ମୁଁ ମନେ ମନେ ଭାବିଲି ଏଇ ସାଧୁଟି ଅହଂକାରୀ ଆଉ ଭଣ୍ଡ । ମୁଁ ମା' କାଳୀଙ୍କ ସ୍ତବ ଗାନ କରେଇ ପଚାରିଲି "ତୁମକୁ ମୁଁ କେତେବେଳେ ପାଇବି ?"

ପୁଣି ଦିନ ୯ଟାରେ ଗଲି ନନ୍ଦଲାଲର ବାପାଙ୍କୁ ନେଇ । ସେ ଶୋଇ-ଥିଲେ । କିଛି ସମୟ ପରେ ଅରୁଣ ଦୁଧ, କଦଳୀ ନେଇ ଆସିଲା । ତା' ପାଖରେ ଆଉ ଗୋଟିଏ ସାଧୁ ବସିଥିଲା, ସେ ଜଣକ ବି ଅଶିକ୍ଷିତ ଆଉ ଅହଂକାରୀ ମନେ ହେଲା । ମୁଁ ସାଧୁଟିକୁ ପଚାରିଲି, "ମୁଁ କାଳୀମନ୍ତ୍ର ନେଇଛି । କେତେବେଳେ ସିଦ୍ଧି ଲାଭ କରିବି ?" ସାଧୁଟି କର୍କଶ ସ୍ୱରରେ କହିଲା, "ତୁମର ପୂର୍ବ ସଂସ୍କାର ନାହିଁ । ତୁମେ କେମିତି ସିଦ୍ଧି ଲାଭ କରିବ ?" ମୁଁ ମୋ ଭାଇଙ୍କ କଥା ପଚାରିଲି ସେ କେବେ କେତେବେଳେ ଭଲ ହେବେ । ସାଧୁଟି କହିଲା, "ପୂର୍ବଜନ୍ମର କର୍ମଫଳ ଭୋଗ କରିବାକୁ ହେବ । ମୁଁ କଣ କରିବି ?" ପାଖରେ ଥିବା ଜଣେ ସାଧୁ କହିଲା, "ତୁମର କାଳୀମନ୍ତ୍ରଟି ଭୁଲ ଅଛି । ଆଉ କାଳୀମନ୍ତ୍ର ନେବା ଦୋଷ । ରାଜନାରାୟଣ କହିଲେ, ମୋ ଅଜା ମରିବା ସମୟରେ ମନ୍ଦିର ଗଢ଼ିବା ପାଇଁ କହିଥିଲେ । ସେଟା ଗଢ଼ା ହୁଆନାହିଁ ସେଥିପାଇଁ ଘରେ ଏତେ ଅଶାନ୍ତି । ରାଜନାରାୟଣ ମୋତେ ବସିବାକୁ କହିଲାରୁ ସେ କହିଲା ସେ 'ଇସ୍‌କୋ ଜାନେ ଦୋ' । ମୋ ମନରେ ଖୁବ୍ ଆଘାତ ଲାଗିଲା । କିଛି ସମୟ ପରେ ନିକଟର ସାଧୁଟି କହିଲା; 'ଆଠ ବଜେ ଆନା' । ଆମେ ଚାଲି ଆସିଲୁ । ରାତିରେ ଅଉ ଗଲିନାହିଁ । ଆଗ୍ରହରେ ଏଆଡ଼େ, ସିଆଡ଼େ ଲକ୍ଷ୍ୟହୀନ ଭାବରେ ବୁଲିଲି । କିଛି ଭଲ ଲାଗୁନାହିଁ କଣ କରିବି ଭଗବାନ ! ତୁମେହିଁ ମୋର ସହାୟ !

॥ ୭ ନଭେମ୍ବର ୧୯୬୯ : ଶୁକ୍ରବାର ॥

ନାମ ଜପ କରୁଛି । ବର୍ତ୍ତମାନ ଭଗବତ୍ ଆଲୋଚନା ଭଲଲାଗେ । ଅହଂକାର ବର୍ତ୍ତମାନ ବି ଅଛି । କାମରିପୁର କାର୍ଯ୍ୟକଳାପ କିଛି ବହୁତ କମିଛି । ହୀରାଲାଲ ଆଦିଙ୍କୁ ଆଗେ ଭଲ ପାଉଥିଲି, ବର୍ତ୍ତମାନ ଘୃଣା କରେ, ଆଉ ଦୂରରେ ରହେ । ନିଜକୁ ସଂପୂର୍ଣ୍ଣରୂପେ ବର୍ତ୍ତମାନ ମା'ଙ୍କ ଉପରେ ସମର୍ପଣ କରିପାରୁନାହିଁ । ମୁଁ ବର୍ତ୍ତମାନ ଧର୍ମ ସମ୍ବନ୍ଧୀୟ ବହି ବହୁତ ପଢ଼ୁଛି । କଲେଜର ପଢ଼ାପଢ଼ି ଏକଦମ୍ କରୁନି । ମା ! ତୁମେ ଜାଣ, ଯାହା ଭଲ ସେଇ ରାସ୍ତାରେ ମୋତେ ନେଇଯାଅ ।

ତୁମେ ନବୁ । ମୁଁ ନମିତ୍ତ ମାତ୍ର !

ମୁଁ ଆଜି ସ୍ୱପ୍ନ ଦେଖିଲି ଯେ ମୋ ସହିତ ଜଣେ ସାଧୁର ଯୁକ୍ତିତର୍କ ଲାଗିଛି । ସେ ମୋତେ ଗୋଟିଏ ଖରାପ କଥା କହିବାରୁ ମୁଁ ତାକୁ ଗାଳି ଦେଲି । ମୋ ବନ୍ଧୁମାନେ ଭାବିଲେ ଏଥର ନିଶ୍ଚୟ ଏଇ ସାଧୁର ଅଭିଶାପରେ ମୋର ମୃତ୍ୟୁ ହେବ । କିନ୍ତୁ ସେ ମୋ ଉପରେ ମନ୍ତ୍ର ଛାଡ଼ିଲା । ମୁଁ ମା' କାଳୀଙ୍କୁ ପ୍ରାର୍ଥନା କରିବାରେ ଲାଗିଲି । ଆଉ ମୋର ମୃତ୍ୟୁ ହେଲାନି ।

|| ୮ ନଭେମ୍ବର : ୧୯୬୯ ||

ଆଜି ପ୍ରାୟ ୭ଟା ବେଳେ ଉଠିଲି । ସାରାଦିନ ରାମପ୍ରସାଦଙ୍କ ଜୀବନୀ ଆଉ ଅନ୍ୟ ଧର୍ମଗ୍ରନ୍ଥ ନେଇ ବ୍ୟସ୍ତଥିଲି । ଅପରାହ୍ଣରେ ବୁଲିବା ସମୟରେ କେବଳ ଗୋପାଳ ତା ସହିତ ଦେଖା ହୋଇଥିଲା । ଆଜି କାମ-ଭାବ ଉଠିବାରୁ 'ବ୍ରହ୍ମଚର୍ଯ୍ୟ' ନାମକ ଗୋଟିଏ ବହିରୁ କିଛି ପୃଷ୍ଠା ପଢ଼ିଲି, କାମଭାବ ଜମିଗଲା । ଶୋଇବା ସମୟରେ ଆସନ କରି ଶୋଇଥିଲି, ଯେଉଁଥିପାଇଁ ସ୍ୱପ୍ନଦୋଷ ହୋଇନି । ଆଜି ମୋର କାମ-ଭାବକୁ ଖୁବ କଠୋର ଭାବେ ମା'ଙ୍କ ଇଚ୍ଛାରେ ଚପାଇ ଥିଲି ।

ଆଜି ରାତିରେ ମନକୁ ଶୁଦ୍ଧ କରି, ନାମ ଜପ କରୁକରୁ ଶୋଇପଡ଼ିଥିଲି । ଅଉ ଆଗଦିନ ପରି ଅଜ୍ଞାନ ହୋଇପଡ଼ିଥିଲି । ମୁଁ ବୋଧହୁଏ କାଲି ମା'ଙ୍କୁ ଦେଖିବି ।

|| ୯ ନଭେମ୍ବର ୧୯୬୯ : ରବିବାର ||

ଆଜି ଦୀପାବଳୀ ଅମାବାସ୍ୟା, ଆଜି କାଳୀ ପୂଜା । ମୋର ଆରାଧ୍ୟ ଦେବୀଙ୍କ ପୂଜା ।

ଆଜି ସକାଳେ ଜଣେ ଲୋକ ପାଖକୁ ବାବୁରାମ ସହିତ ହାତ ଦେଖାଇବାକୁ ଗଲି । ଲୋକଟିର ନାମ ଜାଣେନାହିଁ । ସାଙ୍ଗିଆ ହେଲା 'ସାହା' । ପି.ଡବ୍ଲ୍ୟୁ.ଡ଼ି ଅଫିସରେ କାମ କରନ୍ତି । ଲୋକଟି ମୋ' ହାତ ଦେଖି କହିଲେ ଯେ ମୋ' ହାତଟି ଖୁବ୍ ଜଟିଳ ହାତ । ଶନି ଦୋଷ ଅଛି, ସେଥିପାଇଁ ମୋତେ ମୋ ମା'କୁ ପ୍ରତ୍ୟେକ ଦିନ ତିରିଶ ଦିନ ପର୍ଯ୍ୟନ୍ତ ପ୍ରଣାମ କରିବାକୁ କହିଲେ ।

ଯୋଗମାୟା ଦେବୀଙ୍କ ପାଖରେ ଦୀକ୍ଷା ନେବା କଥାଟା ତାଙ୍କ ପାଖରେ ଆଉ ବ୍ରଜ କର୍ମକାର ପାଖରେ କହି ଦେଲି । ଗୋପାଳ ମୋତେ କହିଲା ଯେ, ଶୋଇବା ସମୟରେ ତକିଆ ଉପରେ ଓଁ ଲେଖି ତା ଉପରେ ମା' ଲେଖିଲେ ଓ ତା ଉପରେ ଶୋଇଲେ, ଯାହା ଭାବାଯାଏ ସେଇଟା ପାଇହୁଏ । ଗୋପାଳ ଭଉଣୀକୁ ଏଇକଥା ତା' ବାପା କହିଥିଲେ, ଏଇଟା ଉପରେ ମୋର ପୂରା ବିଶ୍ୱାସ

ଅଛି ।

ମୁଁ ଟେବୁଲ ଉପରେ ଏହାସବୁ ଲେଖି ଶୋଇ ପଡ଼ିଥିଲି । ମୁଁ ଦେଖି ପାରିଲି ଯେ ମୁଁ ମୋଟା ହୋଇ ହୋଇ ବ୍ରହ୍ମ ସହିତ ମିଶି ଯାଉଛି । ମୋର 'ମୁଁ'ତ୍ୱ ଚାଲିଗଲା । ମୁଁ ସବୁ ବସ୍ତୁରେ ମୋ ନିଜକୁ ଦେଖିବାକୁ ପାଇଲି । କିଛି ସମୟ ପରେ ମୋ ସ୍ୱପ୍ନ ଭାଙ୍ଗିଗଲା ।

॥ ୧୩ ନଭେମ୍ବର ୧୯୬୯ : ଗୁରୁବାର ॥

ଏଇ ଗଲା ଦୁଇ ତିନି ଦିନରେ ବିଶେଷ କିଛି ଘଟିନି । କଲେଜ ଖୋଲି ଯାଇଛି । ବର୍ତ୍ତମାନ ମୋର କଲେଜ ଯିବା ଅପେକ୍ଷା ଆଶ୍ରମକୁ ଯିବାର ଝୁଙ୍କ୍ ବେଶୀ । ସୋମବାର ଦିନ ମୁଁ କଲେଜ ନକରି ଆଶ୍ରମରେ ବସିଥିଲି ।

ମଙ୍ଗଳବାର ଦିନ କଲେଜ କରି ଆଶ୍ରମକୁ ଗଲି । କିନ୍ତୁ ମା' ଗୋଟିଏ କଚଡ଼ା ଖାଇଥିବାରୁ ଖୁବ୍ ଆଘାତ ପାଇଥିଲେ । ସେ ଶୋଇପଡ଼ିଥିଲେ । ସେଥିପାଇଁ କିଛି କଥାବାର୍ତ୍ତା ହେଲାନାହିଁ ।

ଛାତ୍ରମାନେ ଅଧ୍ୟକ୍ଷଙ୍କୁ ଘେରାଓ କରି ପ୍ରଥମ ଛମାସିକିଆ ପରୀକ୍ଷା ବାତିଲ୍ କରି ଦେଲେ ।

ଆଜି କିଛି ଘଟିନି । ଆଜି କଲେଜ ଯାଇନି । ପ୍ରଣବ ଆଉ ମୁଁ ସକାଳେ ପୋଲ ଉପରକୁ ବୁଲିବାକୁ ଗଲୁ । ପ୍ରଣବର ଚିନ୍ତାଧାରା ମୋ ଚିନ୍ତାଧାରା ଠାରୁ ସମ୍ପୂର୍ଣ୍ଣ ଅଲଗା ।

ସକାଳେ ଆମ ଗାଡ଼ିରେ (ଟ୍ରକ୍‌ରେ) କଲେଜ କରିବାକୁ ଗଲି । ୧୦ଟାବେଳେ ଧବଳେଶ୍ୱରରେ ପହଞ୍ଚିଲି । ମୋ ଶ୍ରେଷ୍ଠ ଭାଇ ଦିଲ୍ଲୀପ ମୋ ସାଥିରେ ଗଲା । ତାକୁ ଗୋଟିଏ ସ୍ୱେଟର କିଣିଦେଲି । ମୋ ପାଇଁ ବି ଗୋଟିଏ କିଣିଲି ।

୩ଟାରେ କଲେଜ ଶେଷ ହେଲା । ମୁଁ ସମ୍ପାଦଲାଲର ମଟର ସାଇକେଲରେ ଗୋଲକ ରାସ୍ତା ଆସିଲି । ମଟର ସାଇକେଲରେ ଆଜି ଅନେକ ଦିନ ପରେ ଉଠିଛି । ଆଉ ଏତେ ଦୂର ଆଜି ହିଁ ମଟର ସାଇକେଲରେ ମୁଁ ଗଲି ।

ଅପରାହ୍ନରେ ଗୋପାଳ ସହିତ ବୁଲିଲି । ରାସ୍ତାରେ କରବାବୁଙ୍କ ସହିତ ଦେଖା ହେଲା । କରବାବୁ କହିଲେ ଅଜକାଲି ଆମ ଆଡ଼କୁ ଯାଉନି କାହିଁକି । ମଝିରେ ମଝିରେ ଯିବାକୁ କହିଲେ । ଗୋପାଳ କରବାବୁଙ୍କୁ କହିଲା, "ରାଜୁ ଆଜକାଲି ମନ୍ତ୍ର ଯନ୍ତ୍ରର ବହି ପଢ଼େ।" ସେତେବେଳେ କରବାବୁ ମୋତେ କହିଲେ "ଆଗେ କଲେଜର ପଢ଼ାପଢ଼ି, ତାପରେ ଅନ୍ୟ କିଛି ।"

॥ ୧୪ ନଭେମ୍ବର ୧୯୬୯ : ଶୁକ୍ରବାର ॥

ଆଜି ଆଶ୍ରମକୁ ଗଲି । ମା'ଙ୍କୁ କହିଲି, "ମୁଁ ଜଣେ ସାଧୁଙ୍କୁ ପଚାରିବାରୁ ସେ କହିଲେ ଯେ ତୁମର ମନ୍ତ୍ର ଭୁଲ୍ ।" ମା କହିଲେ, "ତୁମର ମନ୍ତ୍ରଟି ଠିକ୍ ଅଛି । ସେ ସାଧୁଟି ବୋଧେ ଜଣେ ଠକ ।" ମୁଁ ମାଙ୍କୁ ମୋର ଅଜ୍ଞାନ ହେବାର କଥା କହିଲି । ମା କହିଲେ ଯେ ମା' (କାଳୀର) ଆକର୍ଷଣ ଲାଗିଲେ ଏମିତି ହୁଏ । ମା' ମୋତେ ରବିବାର ଦିନ ଆସିବାକୁ କହିଲେ । ମୁଁ କହିଲି, "ମୁଁ ସୋମବାର ଦିନ ଆସିବି ।" ମୁଁ ଆଜି ଷଠି ପୂଜା ପାଇଁ ଦେଢ଼ଟଙ୍କାର କମଳା କିଣି ମା' (ଯୋଗମାୟା)ଙ୍କୁ ଦେଲି ।

ଆଶ୍ରମରୁ ଆସି କଲେଜ କଲି । ମୁଁ ପ୍ରତିଜ୍ଞା କରିଲି, ମୁଁ ଯେ କମଳା ଦେଇଛି ଏଇଟା କାହାରିକୁ କହିବି ନାହିଁ ।

ଆଜି ଶିଶୁ ଦିବସ । ବେଙ୍ଗଲୀ ସ୍କୁଲର ଉତ୍ସବକୁ ଅପରାହ୍ଣରେ ଗଲି । ହୀରାଲାଲ୍ ସାଙ୍ଗରେ ଥିଲି । ହୀରାଲାଲ୍ ବୋଧହୁଏ ଆଜି ମୋତେ ଦେଖି ଆକୃଷ୍ଟ ହୋଇଥିଲା, ସେଥିପାଇଁ ମୁଁ ଯେଉଁଠାକୁ ଯାଉଥାଏ, ସେ ମୋ' ସହିତ ଯାଉଥାଏ । ମୋ ପାଖରେ ଗୋଟିଏ ସାଇକେଲ ଥିଲା । ମୁଁ ହୀରାଲାଲ୍‌କୁ କହିଲି, "ସାଇକେଲରେ ବସ, ରଜନୀ ମାଷ୍ଟରଙ୍କ ପାଖକୁ ଯିବା ।" ଆଜି ହୀରାଲାଲକୁ ଦେଖି ମୋ ମନରେ କାମ-ଭାବ ଖୁବ୍ ଜାଗରିତ ହେଲା । ମୁଁ ମା' (କାଳୀ)ଙ୍କୁ ସ୍ମରଣ କଲି । ଓ ମୋତେ ରକ୍ଷା କରିବାକୁ କହିଲି । ମା (କାଳୀ) ମୋତେ ବଞ୍ଚାଇଲେ । ମୁଁ ମା (କାଳୀ)ଙ୍କୁ ଧନ୍ୟବାଦ ଦେଲି ଓ କହିଲି, "ମୋ ଠାରୁ ବର୍ତ୍ତମାନ ପରୀକ୍ଷା ନଅନା । ମୁଁ ବଡ଼ ଦୁର୍ବଳ, ମୁଁ ବୋଧହୁଏ କୃତକାର୍ଯ୍ୟ ହୋଇପାରିବିନାହିଁ । ପ୍ରଥମେ ମୋତେ ବିପଦରୁ ରକ୍ଷା ପାଇବା ପାଇଁ ଶକ୍ତି ଦିଅ । ପରେ ପରୀକ୍ଷା ନିଅ ।"

॥ ୧୫ ନଭେମ୍ବର ୧୯୬୯ : ଶନିବାର ॥

୮ଟାରେ କଲେଜକୁ ଗଲି । ମାତ୍ର ଗୋଟିଏ ପିରିଅଡ଼ ଆଜି ହେଲା । ଗୋବିନ୍ଦ ଦତ୍ତ ପାଖରେ ବେଶୀ ସମୟ ଆଡ୍ଡା ମାରିଲି । କୃପେନ୍ କଲେଜକୁ ଆଜି ଆସିଛି । ସିନେମା ଦେଖିଲି ନାହିଁ ଭଲ ସିନେମା ଥିବା ସତ୍ତ୍ୱେ । କୌଣସି ସୁନ୍ଦରୀ ଝିଅକୁ ଦେଖିଲେ ଆଜିକାଲି ମୋ' ମନରେ ମାତୃ ଭାବନା ଆସୁଛି । ଆଉ ମୁଁ ଭାବୁଛି ଯେ ଯିଏ ଏସବୁର ସୃଷ୍ଟିକର୍ତ୍ତା ସେ କେତେ ସୁନ୍ଦର !

ଧ୍ୟାନ ବେଶୀ ହେଉନାହିଁ । ୫।୧୦ ମିନଟ୍ ମାତ୍ର ହେଉଛି । "ରାମକୃଷ୍ଣ ଦେବଙ୍କ ଉପଦେଶାବଳୀ" ନାମକ ବହିଟି ପଢୁଛି ।

॥ ୧୬ ନଭେମ୍ବର ୧୯୬୯ : ରବିବାର ॥

ଆଜି କଲେଜ ବନ୍ଦ । ଆଜି ମା' ମୋତେ ଆଶ୍ରମକୁ ଯିବାକୁ କହିଥିଲେ । କିନ୍ତୁ ଯାଇ ପାରିଲି ନାହିଁ ।

ସନ୍ଧ୍ୟାପରେ ମା (କାଳୀ)ଙ୍କୁ ଖୁବ୍ ବ୍ୟାକୁଳ ଭାବରେ ଡ଼ାକିଲି । କାଳୀଙ୍କ ଫଟୋଟି କୁହାଁ ରହିଥିଲା । ମନେ ହେଲା ଯେମିତ ମା'ଙ୍କ ଚକ୍ଷୁ ଏଆଡ଼େ ସିଆଡ଼େ ହେଉଅଛି ।

ରାତିରେ ଶୋଇ ଶୋଇ ମନ୍ତ୍ରଜପ କଲି । ଆନନ୍ଦର ତରଙ୍ଗ ଅନୁଭବ କରିବାରେ ଲାଗିଲି । କିଛି ସମୟ ପରେ ଅଜ୍ଞାନ ହୋଇଗଲି । ଅଜ୍ଞାନ ଅବସ୍ଥାରେ ମା (କାଳୀ)ଙ୍କୁ ଦେଖିବାକୁ ପାଇଲି । ତାଙ୍କ ସଙ୍ଗେ ହନୁମାନ, କୃଷ୍ଣ ପ୍ରଭୃତି ଅନେକ ଦେବାଦେବୀ ଥିଲେ । କିଛି ସମୟ ପରେ ମା' ନାଚିବାରେ ଲାଗିଲେ । ମାଙ୍କ (କାଳୀ)ସ୍ୱର କର୍କଶ ଭଳି ଲାଗିଲା । ରାଜନୀତି ଛାଡ଼ିବା ପାଇଁ ଆଓ୍ୱାଜ ଆସିଲା । କିଛି ସମୟପରେ ପୁଣି ସ୍ୱାଭାବିକ ହୋଇଗଲି ।

॥ ୧୭ ନଭେମ୍ବର ୧୯୬୯ ॥

କଲେଜକୁ ଯିବାର ଆଗେ ଗୋଟିଏ ପିରିଅଡ୍ କ୍ଷତି କରି ଆଶ୍ରମକୁ ଗଲି । ମା' ନଥିଲେ । ଛୁଟି ହେବା ପରେ ପୁଣି ଗଲି । ଯେତେବେଳେ ସମସ୍ତେ ଶୋଇଥିଲେ । ୩ଟା ବେଳେ ପୁଣି ଅରୁଣକୁ ନେଇ ଗଲି, ଯେତେବେଳେ ମା'ଙ୍କ ଭେଟ ପାଇଲି ।

ମା ଆମକୁ ଅଙ୍ଗୁର ଦେଲେ, ଆମେ ଖାଇଲୁ । ଚା ଦେଲେ, ଖାଇଲୁ । ମାଙ୍କୁ ଗୋପନରେ କାଲି ରାତିର ସବୁ ଘଟଣା କହିଲି । ମା' କହିଲେ ସବୁ ଦେବତା ଏକ ମାଆରେ ଥାଆନ୍ତି । ଆଉ ଯାହାସବୁ ମୁଁ ଦେଖିଛି ସବୁ ସତ୍ୟ । ମୁଁ ପଚାରିଲି, କେତେବେଳେ ମା (କାଳୀ)ଙ୍କର ଦେଖା ପାଇବି । ସେ କହିଲେ, "ଖୁବ୍ ଶୀଘ୍ର ପାଇବ ।"

ମାଙ୍କୁ କହିଲି, ମୁଁ ଆଜୀବନ ବ୍ରହ୍ମଚାରୀ ରହିବାକୁ ଚାହେଁ । ମା କହିଲେ, "ମୁଁ ତୁମକୁ ହନୁମାନର ମନ୍ତ୍ର ଦେବି । ତୁମର ମନସ୍କାମନା ପୂର୍ଣ୍ଣ ହେବ ।" ମା ପୁଣି କହିଲେ ସେ ମୋ ମନ ଖୁବ୍ ସରଳ । ସନ୍ଧ୍ୟା ଟ୍ରେନରେ ଚାଲି ଆସିଲି ।

॥ ୧୮ ନଭେମ୍ବର ୧୯୬୯ : ମଙ୍ଗଳବାର ॥

ସକାଳେ ମୁଁ ମୋ ଜ୍ୟେଷ୍ଠ ଭାଇକୁ 'ହାରାମ୍‌ଜା ପଠା' କହିବାରୁ ମା' ମୋତେ ବହୁତ ଗାଳି ଦେଲେ । ମୁଁ କିଛି ନକହି ଧୈର୍ଯ୍ୟର ସହିତ ସହିଗଲି । ଖାଇପିଇ କଲେଜ ଗଲି । ୧୫ ମିନିଟ ବିଳମ୍ବ ହେଲା । ଜଗଧାତ୍ରୀ ପୂଜା ପାଇଁ ୧୨।୧୫ ମିନିଟରେ ଛୁଟି ହେଲା । ଛୁଟି ହେବାପରେ ଗୋବିନ୍ଦ ପାଖକୁ ଗଲି । ଯୋଗମାୟା ଆଶ୍ରମର ରସିଦ ବହିଟି ନେଇ ଆସିଲି । ସାଢ଼େ ଗୋଟାଏ ବସରେ ଗୋଲକଗଞ୍ଜ ଆସିଲି । ଯୋଗମାୟା ଆଶ୍ରମକୁ ଯାଇନି ।

ଅପରାହ୍ଣରେ ମୁଁ ଆଉ ପ୍ରଣବ, ଗୋପାଳର ଘରକୁ ଗଲୁ । ସେଠାରେ ପ୍ରଣବ କହିଲା, "ମୁଁ କଲେଜ ଛାଡ଼ିଦେବାର ମନସ୍ଥ କରିଛି । ଏହି ଗୋଟିଏ ମାସ ଭାବି ଚିନ୍ତି ଶେଷରେ ଏଇଟି ଠିକ୍ କରିଛି" । ମୋ ନିଷ୍ଠୁର ମନ ଏହିକଥାରେ କାହିଁ କାହିଁ ଆନନ୍ଦ ପାଇଲା । ମୋ ବନ୍ଧୁର ଭବିଷ୍ୟତ ନଷ୍ଟ ହେଉଛି; କିନ୍ତୁ ମୋ ମନଟି ଏହିଠାରେ ହିଁ ଆନନ୍ଦ ପାଏ । ମୁଁ ଭାବିଲି ଯେ ମୁଁ ଶିକ୍ଷିତ ହେଲେ ଆଉ ମୋ ବନ୍ଧୁବାନ୍ଧବ ଅଶିକ୍ଷିତ ରହିଲେ ମୋତେ ମନେ ମନେ ସମ୍ମାନ କରିବେ । ଶିକ୍ଷିତର ସଂଖ୍ୟା କମ୍ ହେଲେ ଆଉ ମୁଁ ବେଶୀ ଶିକ୍ଷିତ ହେଲେ, ମୁଁ ଖୁବ୍ ସମ୍ମାନ ପାଇବି ।

କିନ୍ତୁ ମୁଁ କୃତ୍ରିମ ଉପଦେଶ ଛଳରେ ପ୍ରଣବକୁ କଲେଜ ନଛାଡ଼ିବାକୁ ଧମକାଇଲି ଆଉ ବହୁତ ବୁଝାଇଲି ଯେ, ପଢ଼ାପଢ଼ି ଛାଡ଼ିବା ଭଲ ନୁହେଁ । (କିନ୍ତୁ ମୁଁ ମନେ ମନେ ଚାହେଁ ଯେ ପ୍ରଣବ କଲେଜ ଛାଡ଼ିଦେଉ । ମୋର ଯଦି ଉପରେ ଏବଂ ଭିତରେ ଏମିତି ପ୍ରଭେଦ ରହେ, ତେବେ ମୁଁ କୌଣସି ଦିନ ଉନ୍ନତି କରିପାରିବ ନାହିଁ !)

ମୋର ଅଉ ଗୋଟିଏ ଉଦାହରଣ ଅଛି— ଗୋଲ୍‌କଗଞ୍ଜର ପିଲାମାନଙ୍କଭିତରେ ଗୋଟିଏ ବ୍ୟାଚ୍‌ରେ ଆମ କଲେଜରେ ଅଛନ୍ତି ୩ଜଣ । ମୁଁ, ଉପେନ ଆଉ ଗୋବିନ୍ଦ । ମୋର ଅନର୍ସ ଥିଲା ଦର୍ଶନଶାସ୍ତ୍ର । ସେଇଟା ତଳେ ଦେଇଥିବା କାରଣ ସବୁପାଇଁ ଛାଡ଼ି ଦେଲି—

୧— ଅନର୍ସ ପାଇଁ ଟ୍ରେନରେ ଆସି ପାରନ୍ତି ନାହିଁ । ହୀରାଲାଲ ଟ୍ରେନରେ ଯାଏ, ଆଉ ମୁଁ ହୀରାଲାଲକୁ ଭଲ ପାଏ । ଏକାସାଥିରେ ଯେମିତି ଆସିପାରିବୁ ସେଥିପାଇଁ ।

୨— ଅନର୍ସ ନେବାରୁ ଛୁଟି ଡେରିରେ ହୁଏ । କିନ୍ତୁ ହୀରାର ଛୁଟି ଆଗେ ହୁଏ । ଦୁହେଁ ଯେମିତି ଗୋଟିଏ ବସରେ ଯାଇପାରିବୁ ସେଥିପାଇଁ ।

୩— ଅଧିକ ପାଠପଢ଼ା ଓ ପରିଶ୍ରମର ଭୟ ।

୪— ଯଦି ଅନର୍ସରେ ବେଶୀ ଖଟେ, ଆଉ ଯଦି ଅନ୍ୟ ଗୋଟିଏ ବିଷୟରେ ଫେଲ ହୁଏ, ତାହେଲେ ପୂରା ଫେଲ ହୋଇଯିବ, ଏଇ ଭୟରେ ।

୫— ଅନର୍ସ ରଖିଲେ ଗଳ୍ପ ବହି ବେଶୀ ପଢ଼ିପାରିବ ନାହିଁ, ସେଥିପାଇଁ ।

(ଅନର୍ସ ଛାଡ଼ି ଦେବାରୁ ଶେଷରେ ବହୁତ ପସ୍ତାଇଥିଲି । ଆଉ ପ୍ରଫେସରଙ୍କୁ ମୋତେ ଅନର୍ସ ପୁଣି ଦେବାକୁ କହିଥିଲି । କିନ୍ତୁ ସେତେବେଳକୁ ଅନର୍ସ ନେବାର ସମୟ ଚାଲି ଯାଇଥିଲା । ଛାଡ଼ିବାର ସମୟରେ କିନ୍ତୁ ଅନ୍ଧ ହୋଇ କାହାର କଥା ଶୁଣିନଥିଲି ।)

ଗୋବିନ୍ଦ ଅନର୍ସ ନେଇଛନ୍ତି । ଉପେନର ଅନର୍ସ ବର୍ତ୍ତମାନ ବି ଅଛି । ବର୍ତ୍ତମାନ ମୋର ମନ ଚାହେଁ ଉପେନ ଅନର୍ସ ନରଖୁ । ଏଇମିତି ଯାହାର ମନ, ସେ ଜୀବନରେ କଣ କରିପାରେ ?

ଭଗବାନ ! ମା କାଳୀ ! ଦୟା କର । ମୋର ଅହଂକାର ନଷ୍ଟ କର । ମା' ଯାହା କରନ୍ତୁ, ଭଲ କରନ୍ତୁ । ଏଥିପାଇଁ ଅନର୍ଥ ଗୁଡ଼ିକା କଥାରେ କୌଣସି ଭଲ ଉଦ୍ଦେଶ୍ୟ ରହିପାରେ ।

ଅନେକ ଦିନ ଧରି ମୋର ସ୍ୱପ୍ନଦୋଷ ହୋଇନି । କିନ୍ତୁ ଆଜି ରାତିରେ ୩ଟା ୪ଟା ବେଳେ ହଠାତ୍ ସ୍ୱପ୍ନଦୋଷ ହୋଇଛି । ମୁଁ ସ୍ୱପ୍ନରେ ଦେଖିଥିଲି ବିଜୟଲକ୍ଷ୍ମୀ ବାଗ୍‌ଚୀକୁ ତାଙ୍କ ସହିତ ସଙ୍ଗମ ହୋଇନି, କେବଳ ତାଙ୍କର ହାତ ଧରିଥିଲି । ସେଥିରେ ସ୍ୱପ୍ନଦୋଷ ହେଲା । ମୁଁ ବୀର୍ଯ୍ୟ ଛାଡ଼ିଦେବାକୁ ଇଚ୍ଛା କରିଥିଲି, କିନ୍ତୁ ସବୁ ଲୁଗାରେ ଲାଗିଗଲା । ଅନେକ ଦିନଠାରୁ କାମ ବାସନା ରୂପୀ କୁଚିନ୍ତାକୁ ମୁଁ ମନରେ ସ୍ଥାନ ଦେଇନି । ବର୍ତ୍ତମାନ ସ୍ୱପ୍ନରେ ବି କୁଚିନ୍ତା ଆସେନା । ଆସିଲେ ମାଙ୍କୁ ଡାକେ । "ମା, ତୁମେ ଯାହା କର ମଙ୍ଗଳ ପାଇଁ ହିଁ କର । ମା'ଗୋ ତୁମେ ମୋତେ କେବେ ଦେଖାଦେବ ? ମୁଁ ତୁମ ପାଇଁ ବ୍ୟାକୁଳ । ତୁମେ ମୋ ଉପରେ ଦୟାକର ମା' । ମୁଁ ଅଜ୍ଞ, ମୁଁ କିଛିରେ ପାରଦର୍ଶୀ ନୁହେଁ । ମୋତେ ଦୟାକର ମା' ।"

ଆଜି ବଡ଼ ଖେପ କିଛି ପଢ଼ିନି । ଆଜି କଲେଜରେ ପୁରା କ୍ଲାସ ହୋଇଛି । ଆଶ୍ରମକୁ ଯାଇନି । ଆଶ୍ରମ ପାଇଁ ଗୋବିନ୍ଦ ମାଇଁଙ୍କୁ ୫୦ ପଇସା ଆଉ ସୁଭାଷ ଦାସ ଠାରୁ ୫୦ ପଇସା ଆଣିଲି ।

|| ୨୦ ନଭେମ୍ବର ୧୯୬୯ : ଗୁରୁବାର ||

ଯୋଗମାୟା ଆଶ୍ରମକୁ ପ୍ରଣବ ସହିତ ଗଲି । ମାଙ୍କ ସହିତ କଥାବାର୍ତ୍ତା କଲି । ପଚାରିଲି ଯେ ମୋତେ ଆମ ଘର ଲୋକ ଖୁବ୍ ହେୟ ମନେ କରନ୍ତି । କିନ୍ତୁ ବାହାରର ଲୋକେ ଖୁବ ଭଲ କହନ୍ତି । ଏହାର କାରଣ କ'ଣ ? ମା କହିଲେ ଧାର୍ମିକ ଲୋକମାନେ ଘରେ ଆଦର ପାଆନ୍ତି ନାହିଁ, ସେମାନେ ବାହାରେ ପାଆନ୍ତି । ସୁଖ ସହିତ ଦୁଃଖ ରହିବ । ଆଉ କହିଲେ ଯେ, 'ମୁଁ ଶୁଣିଲି ସମସ୍ତେ ତୁମକୁ ଭଲ ବୋଲି କହନ୍ତି' । ମା କହିଲେ ଯେ ସବୁ କିଛି ମା (କାଳୀ) ଠିକ୍ କରି ଦେବେ ।

କଥାରେ କଥାରେ ସାଓର ମଲାଙ୍କରଙ୍କ କଥା କହିଲି । ଆଉ ତାଙ୍କ ଅସୁସ୍ଥତା କଥା ବି କହିଲି । ମା କହିଲେ, ଆଜି ମୁଁ ଧ୍ୟାନରେ ଦେଖିବି ।

ମୁଁ ପଚାରିଲି ହନୁମାନଙ୍କର ମନ୍ତ୍ର କେତେବେଳେ ଦେବ । ମା କହିଲେ ଆଉ କିଛି ଦିନ ଯାଉ, ତାପରେ ଦେବ ।

ମୁଁ ପଚାରିଲି ହନୁମାନଙ୍କର ମନ୍ତ୍ର ଦେଲେ କଣ ଲାଭ ହେବ । ସେ କହିଲେ ସେ ବଳ, ବୀର୍ଯ୍ୟ, ବୁଦ୍ଧି ସବୁଆଡୁ ଉନ୍ନତ ହେବ ।

ମା କହିଲେ ତୁମର ଦାୟିତ୍ୱ ମା (କାଳୀ) ଗ୍ରହଣ କରିଛନ୍ତି, ତାଙ୍କର (କାଳୀଙ୍କର)

ଯେଉଁଦିନ ଇଚ୍ଛା ହେବ, ଦେଖାଦେବେ । ମାଙ୍କୁ ଦେଖିଲେ ସବୁ କଥା ଭାଇଙ୍କୁରେ ଲେଖିବି ନା ନାହିଁ । ମା କହିଲେ, 'ହଁ ଲେଖ ।' ମାଙ୍କ ଘରେ ରହିଥିବା ଏହି ମୂର୍ତ୍ତିଟି ଏତେ ଜୀବନ୍ତ ବୋଲି ଲାଗେ କାହିଁକି ? ମା କହିଲେ ଯେ ମନ୍ତ୍ର ଦ୍ୱାରା ତାଙ୍କୁ ପ୍ରାଣ ଦିଆ ହୋଇଛି । ସେଠାରେ ଶାନ୍ତି, କେତେବେଳେ ପାଇବି । ମା କହିଲେ ଯେ ନିଶ୍ଚୟ ପାଇବ ।

ଭରଦାଙ୍କ (ଯୋଗମାୟା ଆଶ୍ରମର) ସହିତ ଦେଖା ହେଲା । ସେ ଆମକୁ କହିଲେ ତାଙ୍କର ବଡ଼ ଭାଇ ଖୁବ୍ ବଡ଼ ଭବିଷ୍ୟତ-ବକ୍ତା (ଜ୍ୟୋତିଷ) । ତୁମେମାନେ ହାତ ଦେଖାଇବାକୁ ଯିବ । ଆଶ୍ରମର ଲୋକମାନଙ୍କୁ ଶତରଞ୍ଜି ଦେଲି ।

ଆଶ୍ରମରୁ ଆସି ଭୋଜନ କଲି । ଗୋଟିଏ ଅଶାନ୍ତ ଷଷ୍ଠ ହେଲା । ରାତିରେ କାମ ଭାବପୂର୍ଣ୍ଣ ସ୍ୱପ୍ନ ଦେଖିଲି, କିନ୍ତୁ ସ୍ୱପ୍ନଦୋଷ ହୋଇନି ।

|| ୨୧ ନଭେମ୍ବର ୧୯୬୮ : ଶୁକ୍ରବାର ||

ବିଶେଷ କିଛି ଘଟିନି । ଦିବା ତେଣ୍ଡ଼ି ହେବାରୁ ପ୍ରଥମ ପରମ୍ପରା କରିପାରିଲି ନାହିଁ ।

ସୁରେଶ ଶର୍ମା (ଘାର) ମୋତେ ଝାଲ୍‌ର ସୂତା ଆଣିବାକୁ କହିଲେ, ମୁଁ ଆଣିଲି । ଶ୍ୟାମଲାଲ ଔଷଧ ଆଣିବାକୁ କହିଥିଲା, ଆଣିଲି ।

ସକାଳେ ଶ୍ୟାମଲାଲକୁ ଦେଖି ମନରେ କାମଭାବନା ଜାଗ୍ରତ ହେଲା । ଦମନ କରିବା ପାଇଁ ମା (କାଳୀ)ଙ୍କ ପାଖରେ ପ୍ରାର୍ଥନା କରିଲି । ମୁଁ ଶ୍ୟାମଲାଲଠାରୁ ଦୂରରେ ରହିବାକୁ ଇଚ୍ଛା କରେ ।

ସନ୍ଧ୍ୟାରେ ମୁଁ, ଅରୁଣ ଆଉ ବାବୁରାମ ଯୋଗମାୟା ଦେବୀଙ୍କର ଆଶ୍ରମ ପାଇଁ ଚାନ୍ଦା ସଂଗ୍ରହ କରିବାକୁ ଗଲି ।

ରାତିରେ ମୋ ବୋଉକୁ କହିଲି ଯେ ମୁଁ ମାଙ୍କୁ (ଯୋଗମାୟା ଦେବୀ) ସାଓର ମଲଙ୍କ ବିଷୟରେ କହିଛି । ସେ ଠିକ୍ କରିଦେବେ । ମା ଶୁଣି ଖୁବ୍ ସନ୍ତୁଷ୍ଟ ହେଲେ ।

ଯଦି ମା (ଯୋଗମାୟା) ସାଓର ମଲଙ୍କୁ ଠିକ୍ କରି ପାରନ୍ତି, ତା ହେଲେ ମୁଁ ମାଙ୍କ ପାଖକୁ ଅବାଧରେ ଯିବା ଆସିବା କରି ପାରିବି ।

ଅରୁଣ ମୋତେ ଖୁବ ଉଚ୍ଚମାନର ଲୋକ ବୋଲି ଭାବେ । ଆଉ କହିଲା ଯେ ମୁଁ ଭାରି ଭୋଲା । ମୁଁ ଶୁଣି ମନେ ମନେ ଖୁବ ଆନନ୍ଦ ପାଇଲି, କିନ୍ତୁ ଉପରେ ସେହି ଭାବଟି ଦେଖାଇଲି ନାହିଁ, ଆଉ ଉପରେ ଉପରେ ପ୍ରତିବାଦ କଲି । କାମଭାବକୁ ଜୟ କରିବା ଭଳି ଶକ୍ତି ମୋର ବର୍ତ୍ତମାନ ହୋଇନାହିଁ । ବାହାର ଏବଂ ଭିତର ବର୍ତ୍ତମାନ ଏକ ହୋଇନି । ଅହଂକାର ଯାଇନାହିଁ । ଲୋଭ ପୂରାପୂରି ଅଛି । କିନ୍ତୁ ଆଗ ଅପେକ୍ଷା ଅନେକ ଉନ୍ନତି ଆଡ଼କୁ ଆସିଛି ।

ପ୍ରତ୍ୟେକ ଦିନ ମୁଁ ଭାବେ ଯେ ସକାଳେ ଶୀଘ୍ର ବେଳେ ଉଠି ଧ୍ୟାନ କରିବି, କିନ୍ତୁ

କରିବା ସମ୍ଭବ ହେଉନାହିଁ । କାଲି ସକାଳେ ଉଠିବି, ଏହା ମୋର ପ୍ରତିଜ୍ଞା ।

॥ ୨୨ ନଭେମ୍ବର ୧୯୬୯ : ଶନିବାର ॥

ଆଜି ଦିନଟି ଖୁବ ଆନନ୍ଦ ଅଛି ନୂଆରେ ଗଲି । କ୍ଲାସ କରିବା ପରେ ଯୋଗମାୟା ଆଶ୍ରମକୁ ଗଲି । ନନ୍ଦଲାଲ ସହିତ ରାସ୍ତାରେ ଦେଖାହେଲା । ମାଙ୍କୁ (ଆଶ୍ରମର) ପ୍ରଣାମ କରିଲି । ସାଂଠିର ମଲଙ୍କ କଥା ପଚାରିବାରୁ ମା ଯୋଗମାୟା କହିଲେ ସେ ତାଙ୍କୁ କିଏ ବାଣ ମାରିଛି । ଉତ୍ସବ ପରେ ମୁଁ ବ୍ୟବସ୍ଥା କରିଦେବି । ଠିକ୍ ହୋଇଯିବ ।

ଗୋବିନ୍ଦ ପାଖକୁ ଗଲି । ଧର୍ମ ବିଷୟରେ ଆଲୋଚନା କଲି । ଟ୍ରେନରେ ଫେରିଲି । ସାରା ସମସ୍ତଟା ଭଲ ଭାବରେ ଗଲା । ଡିଷ୍ଟ୍ରିକ୍ଟ ଲାଇବ୍ରେରୀରୁ 'ଭକ୍ତବାଣୀ' ଆଣିଲି । ମୋର କାଲିର ପ୍ରତିଜ୍ଞାଟା ଭଙ୍ଗ ହେଲା । କଣ କରିବି ? ମୋ ଭିତରେ ଅଳ୍ପ ଟିକିଏ ବି ଶକ୍ତି ନାହିଁ । ମା, ମୋତେ ଶକ୍ତି ଦିଅ । ଯେମିତି ମୁଁ ମୋର ପ୍ରତିଜ୍ଞାଟା ରକ୍ଷା କରି ପାରେ ।

ସ୍ୱପ୍ନଦୋଷ ହୋଇଛି । ସ୍ୱପ୍ନରେ କିଛି ଦେଖିନି ।

॥ ୨୩ ନଭେମ୍ବର ୧୯୬୯ : ରବିବାର ॥

ଆଜି ସକାଳେ ଉଠିବାରେ ଡେରି ହେଲା ।

ଆଜି ରବିବାର । କଲେଜ ବନ୍ଦ । ସକାଳେ ଆମ ଘରେ ମୋର ଖୁବ କାମ ଥିଲା । ସକାଳେ ବାବୁରାମ ଆଉ ଅରୁଣ ଦା ଯୋଗମାୟା ଦେବୀଙ୍କ ଆଶ୍ରମ ପାଇଁ ଚାନ୍ଦା ଉଠେଇବାକୁ ଗଲେ । ଅପରାହ୍ନରେ ମୁଁ ଆଉ ପ୍ରଣବ କରବାବୁଙ୍କ ପାଖକୁ ଚାନ୍ଦା ପାଇଁ ଗଲି, କିନ୍ତୁ ରସିଦ ବହିଟି ଲାଜ ଯୋଗୁ ବାହାର କରିପାରିଲି ନାହିଁ ।

ଅପରାହ୍ନ ୫ଟାରେ ମୁଁ, ଅରୁଣଦା, ଗୋପାଳ, ବୁରନ, ପ୍ରଣବ, ବାବୁରାମ ଆଉ ଜଣେ ପିଲା ସବୁ ମିଶି ଚାନ୍ଦା ଉଠେଇବାକୁ ଗଲୁ । ବାବୁରାମ ଆଉ ପ୍ରଣବ କିଛିବାଟ ଯାଇ ଅରୁଣ କଥାରେ ରାଗି ଚାଲିଗଲେ । ତାପରେ ଆମେ ୫ ଜଣ ଚାନ୍ଦା ସଂଗ୍ରହ କଲୁ । ଚାନ୍ଦା ଭଲ ସଂଗ୍ରହ ହେଲା । ଦୌଲତରାମ ଦେଲେ ୫ ଟଙ୍କା । ଜଣେ ମୁସଲମାନ ଦେଇଛନ୍ତି ୨ ଟଙ୍କା । ଆମର ମୋଟ ହୋଇଛି ପ୍ରାୟ ୨୦।୨୨ ଟଙ୍କା ।

କିଛିଦିନ ହେଲା ପୁଣି ମୋର ମା କାଳୀଙ୍କୁ ମନପ୍ରାଣ ଦେଇ ଡାକିବା ହୋଇ ପାରିନାହିଁ । କାହିଁକି, ଜାଣିନାହିଁ ।

ଆଜି କାମଭାବର ପ୍ରାଧାନ୍ୟ । ରାତିରେ ସ୍ୱପ୍ନଦୋଷ ହେଲା ।

॥୨୪.୧୧.୬୯ : ସୋମବାର ॥

ଯୋଗମାୟା ଦେବୀଙ୍କର ଆଶ୍ରମ ପାଇଁ ସକାଳେ କିଛି ଚାନ୍ଦା ସଂଗ୍ରହ ହେଲା ।

ସାଙ୍ଗରେ ଥିଲେ ଗୋପାଳ, ନନ୍ଦଲାଲ ଆଉ ପ୍ରଣବ । ପ୍ରାୟ ୫ ଟଙ୍କା ଖେଣ୍ଡେ ସଂଗ୍ରହ ହେଲା ।

ଅପରାହ୍ନରେ ମୁଁ ଆଉ ପ୍ରଣବ ନାରଦାଙ୍କ ପାଖକୁ ଗଲୁ । କିଛିକ୍ଷଣ ପରେ ଗୋପାଳ ଆସିଲା । ରାଜନୀତି ବିଷୟରେ ଅନେକ ସମୟ ଆଲୋଚନା ଚାଲିଲା ।

ରାତିରେ ସ୍ୱପ୍ନଦୋଷ ହେଲା ।

|| ୧୪.୧୧.୭୮ : ମଙ୍ଗଳବାର ||

ସକାଳ ୮ଟା ବେଳେ ନନ୍ଦଲାଲ ପାଖକୁ ଗଲି । ନନ୍ଦଲାଲ ଚାନ୍ଦା ପାଇଁ ୨ ଟଙ୍କା ଦେଲା । ମୋଟ ହେଲା ପ୍ରାୟ ୧୫।୩୦ ଟଙ୍କା । ୧୦ଟା ବସରେ କଲେଜ କରିବାକୁ ଗଲି । ପ୍ରଥମ ପିରିଅଡ଼ କ୍ଲାସ କରି ପାରିଲି ନାହିଁ । କିନ୍ତୁ କାଗଜରେ ରୋଲ ନମ୍ବର ଲେଖି ସାରଙ୍କୁ ଦେଲି ।

କଲେଜ ଛୁଟି ପରେ ରସିଦ ଆଉ ଟଙ୍କା ନେଇ ଆଶ୍ରମକୁ ଗଲି । ମାଙ୍କ ସହିତ ରାସ୍ତାରେ ଦେଖାହେଲା । ମା କହିଲେ, ତୁ ଆଶ୍ରମକୁ ଯାଇ ବସ, ମୁଁ ଆସୁଛି । ମୁଁ ଆଶ୍ରମକୁ ଗଲି । ନିତ୍ୟାନନ୍ଦଙ୍କୁ ଟଙ୍କାଟା ବୁଝାଇ ଦେଲି । କିଛି ସମୟ ପରେ ଧୁରୁଆର S. P.ଙ୍କ ସ୍ତ୍ରୀ ଏବଂ ତାଙ୍କର ଝିଅ ଆସିଲେ । ଝିଅଟି ଦେଖିବାକୁ ସୁନ୍ଦରୀ ଥିଲା, ଆଉ ଖୁବ୍ ଚଞ୍ଚଳ ଥିଲା । ବାରମ୍ବାର ମୋ ଆଡ଼କୁ ଚାହୁଁଥିଲା । ମୋତେ ବି ଭଲ ଲାଗିଲା । ମୁଁ ବି ତା ଆଡ଼କୁ ବାରମ୍ବାର ଚାହିଁବାକୁ ଲାଗିଲି । ସେ ମୋ ଆଡ଼କୁ ଚାହୁଁଥାଏ ଆଉ ହସୁଥାଏ ।

ଅନେକ ସମୟ ପରେ ମା ଆସିଲେ । ମୁଁ ମାଙ୍କୁ କହିଲି, ୨।୩ ଦିନ ଧରି ମୋର ସ୍ୱପ୍ନଦୋଷ ହେଉଛି, ଆଉ ୫।୬ ଦିନ ହେଲା ମୋର ଭକ୍ତି ଆଉ ବ୍ୟାକୁଳତା କ୍ରମଶଃ କମୁଛି । ଆଉ କହିଲି, ଯେକୌଣସି କାମରେ ଶକ୍ତି ପାଉନାହିଁ । ମା କହିଲେ ସ୍ୱପ୍ନଦୋଷ ମୁଁ ଠିକ୍ କରିଦେବି । ଆଉ ଭକ୍ତି ବିଷୟରେ କହିଲେ ସେ ମଝିରେ ମଝିରେ ଏମିତି ଅ-ଭକ୍ତ ସବାର ହୁଏ । ସବୁ ଠିକ୍ ହୋଇଯିବ ।

କିଛି ସମୟ ପରେ ଗୋବିନ୍ଦ ଆଶ୍ରମକୁ ଆସିଲା । ମୁଁ ଆଉ ଗୋବିନ୍ଦ ଟ୍ରେନରେ ଆସିଲୁ । ରାତିରେ ସ୍ୱପ୍ନଦୋଷ ହେଲା ।

|| ୧୫.୧୧.୭୮ : ବୁଧବାର ||

ଆଜି ମୋର ସାଂଘାତିକ ଦିନଟିଏ ଗଲା । ୪।୫ ଦିନ ଲଗି ଲଗି ସ୍ୱପ୍ନଦୋଷ ହେବାରୁ ଶରୀର ଖୁବ୍ ଦୁର୍ବଳ ଲାଗୁଛି । କିଛି ଭଲ ଲାଗୁନି । ଖୁବ୍ ଦୁର୍ବଳ ଲାଗୁଛି । ଶରୀରରେ କୌଣସି ଶକ୍ତି ନାହିଁ । ମନରେ ଶକ୍ତି ନାହିଁ କିଛିଦିନ ହେଲା ମନରେ ଭକ୍ତି ବି ନାହିଁ । ଶରୀରଟି ଖୁବ୍ ବ୍ୟଥା କରୁଛି । ଗତ ପାଞ୍ଚ ଦିନ ବୀର୍ଯ୍ୟପାତ ଯୋଗୁ ମୋର ଏଇ ଅବସ୍ଥା ହୋଇଛି । ତଥାପି ମନରୁ କାମଭାବ ଦୂର ହୋଇନି ।

କଲେଜକୁ ଗଲି । ଶରୀରର ଦୁର୍ବଳତା ଯୋଗୁ କିଛି ଭଲ ଲାଗିଲା ନାହିଁ । ଗୋଟିଏ ପିରିୟଡ଼ ନ କରି ଘରକୁ ଚାଲି ଆସିଲି । ଘରକୁ ଆସି କିଛି ଖାଇ ପିଇ ବାଲି ଭିଜାଇ ସୁରେଲାଲ ପାଖକୁ ଗଲି । ଆଜି ସୁରେଲାଲର ନଂ ଶନ କଟା ହୋଇଥିଲା, ଦେଖିବାକୁ ଖୁବ ସୁନ୍ଦର ଲାଗୁଥିଲା । ମୁଁ ମୋହିତ ହେଲି । ସବୁ କିଛି ଭୁଲି ଗଲି । କାମଦେବ ମୋତେ ଜୟ କଲେ । ସୁରେଲାଲକୁ ମୁଁ କହିଲି ଯେ ଗୋବିନ୍ଦଙ୍କ ଘର ପାଖରେ କୀର୍ତ୍ତନ ଅଛି, ସନ୍ଧ୍ୟାବେଳେ ଚାଲି ଯିବା । ସୁରେଲାଲ ଯିବାକୁ ରାଜି ହେଲା । ତାପରେ ମୁଁ ଆଉ ସୁରେଲାଲ ଦୁହେଁ ମିଶି ବ୍ୟାଡ଼ମିଣ୍ଟନ ଗୋଟିଏ ଗେମ୍ ଖେଳିଲୁ ।

ସନ୍ଧ୍ୟାରେ ସୁରେଲାଲ ପାଇଁ ଅପେକ୍ଷା କରିବାକୁ ଲାଗିଲି, ଗୋବିନ୍ଦ ଘରକୁ ଯିବା ପାଇଁ । ମୋର ଅନ୍ତର୍ଜଗତରେ ଅର୍ଥାତ୍ ମୋ ଅନ୍ତରରେ ଭୀଷଣ ଯୁଦ୍ଧ ଲାଗିଲା । ଶେଷରେ କୁପ୍ରବୃତ୍ତିର ହିଁ ଜୟ ହେଲା । କିଛି ସମୟ ପରେ ସୁରେଲାଲ ଆସିଲା । ସୁରେଲାଲର ସୁଇଟର, ମଫଲର ଦେଇ ଆସିଲା । ଦେଖିବାକୁ ସୁରେଲାଲକୁ ଖୁବ୍ ସୁନ୍ଦର ମନେହେଲା ଆଜି । ମୋର ଧାର୍ମିକ ଭାବନା ସମ୍ପୂର୍ଣ୍ଣ ବୁଡ଼ିଗଲା । ମନେ ମନେ ମୋତେ ରକ୍ଷା କରିବା ପାଇଁ ମା କାଳୀଙ୍କୁ ଡ଼ାକିବାକୁ ଲାଗିଲି । କିନ୍ତୁ ଆଜି ଖୁବ୍ ଆନ୍ତରିକ ଭାବରେ ଡ଼ାକିନାହିଁ । କିନ୍ତୁ କୌଣସି ପତନ ହେଲାନି । ମୁଁ, ସୁରେଲାଲ, ଗୋପାଳ, ବାବୁରାମ ଆଉ ନନ୍ଦଲାଲ ଗଲୁ ଗୋବିନ୍ଦର ଘରକୁ ହରି କୀର୍ତ୍ତନ ଶୁଣିବା ପାଇଁ । ରାସ୍ତାରେ ବାଜେ, କୁତ୍ସିତ, କାମପୂର୍ଣ୍ଣ ଆଳାପ ଆଲୋଚନା ହେଲା । ତିନିହେଁ ମଧ୍ୟ ଆମ ସହିତ ଚାଲିଲେ ।

ଗୋବିନ୍ଦଙ୍କ ଘରେ ଚା ଖାଇଲୁ । ସେ ମୁଢ଼ି ଖାଇବାକୁ ଦେଲା । ଖାଇଲୁ । ହରି କୀର୍ତ୍ତନ କରିଲୁ ୧୫।୨୦ ମିନିଟ୍ । କିନ୍ତୁ ମନରୁ କାମଭାବ ଗଲାନାହିଁ । ଯାହାର ଭାବ ଉଠିଥିଲା ସେମାନଙ୍କୁ ସମାଲୋଚନା କରିଲି ।

୯ଟା ରାତିରେ ଫେରିଲି । ଆସିବା ସମୟରେ ରାସ୍ତାରେ ଖୁବ୍ ବାଜେ ଆଳାପ ଆଲୋଚନା ହେଲା ।

ରାତିରେ ବାଜେ କଥା ସବୁ ଭାବି ଶୋଇ ପଡ଼ିଲି । ରାତିରେ ସ୍ୱପ୍ନଦୋଷ ହେଲା । ମା କାଳୀ ! ରକ୍ଷାକର । ମୋତେ ଅପଥରେ ନିଅନାହିଁ ?

॥ ୨୭.୧୧.୬୯ : ଗୁରୁବାର ॥

ସକାଳ ୭।୧୫ରେ ନିଦ ଭାଙ୍ଗିଲା । ହରବାବୁ (ହରଦାସ ଶାହା) ମୋ ଟେବୁଲ ଉପରେ ଥିବା ଧର୍ମ ସମ୍ବନ୍ଧୀୟ ଫଟୋ ସବୁ ଦେଖି କହିଲେ, "ରାଜୁ ଖୁବ୍ ଭଲ ଲାଇନରେ ଯାଉଛି । ବର୍ତ୍ତମାନରୁ ହିଁ ଏଇ ପଥରେ ଯିବା ଉଚିତ୍ ।" ମୁଁ ନିଜେ ନିଜକୁ ମନେ ମନେ ଧିକ୍କାର କରିଲି । ମଣିଷ ଅନ୍ୟର ଅନ୍ତରର କଥା ଜାଣେ ନାହିଁ । ଯଦି

କାଣିପାରନ୍ତା ତାହେଲେ ତାହେଲେ କେତେ ଭଲ ହୁଅନ୍ତା ।

କାଲିର ଡାଇରି ଲେଖିବା ପରେ କିଛି ସମୟ ନାମ ଜପ କଲି । କିନ୍ତୁ ମନରୁ ବର୍ତ୍ତମାନ ବି କାମଭାବ ଯାଉନି । କଣ କରିବି ? ମୋର ଆଉ ଶକ୍ତି ନାହିଁ । ମା ମୋତେ ଶକ୍ତି ଦିଅ, ମା ! !

କଲେଜ କରିବାକୁ ଗଲି । ପୁରା କଲେଜ କଲି । ତାପରେ ଘଡ଼ି ଠିକ୍ କରିବାକୁ ବଜାରକୁ ଗଲି । ଘଡ଼ି ଠିକ୍ କରି ଗୋଲକଗଞ୍ଜ ବୁଲି ଆସିଲି । ଖିଆ ପିଆ ହେଲା ଜୀବନର ଦୋକାନରୁ 'ବ୍ରହ୍ମଧ୍ୱନି' ପତ୍ରିକାଟି ଆଣିଲି । ଏଇଟି ସ୍ୱରୂପାନନ୍ଦଙ୍କର ଆଶ୍ରମରୁ ପ୍ରକାଶ ପାଏ ।

ଆଜି ମୁଁ କିଛି ଲୋକଙ୍କ ମନରେ ଆଘାତ ଦେଲି । କାରଣ କିଛିଜଣ ଲୋକ ଆମ ଟ୍ରକରେ ଉଠିଲେ । କିନ୍ତୁ ଏତେ ଜଣଙ୍କୁ ନିୟମତ କଥା ଯାଏନା । ସେଥିପାଇଁ ଓହ୍ଲାଇ ଦେଲି । ଏମାନଙ୍କ ଭିତରେ କଲୋନୀର ସମ୍ପଦ ଠାକୁର ଥିଲେ । ସେ ଖୁବ୍ ଦୁଃଖ ଭାବିଲେ । ରାତିରେ ମନ ପବିତ୍ର ଥିଲା । ନାମ ଜପ କରୁ କରୁ ଶୋଇପଡ଼ିଲି । ସ୍ୱପ୍ନଦୋଷ ହୋଇନି । ସ୍ୱପ୍ନରେ ମୋ ଗୁରୁ ମା' ଦେଖାଦେଲେ ।

॥ ୨୮-୧୧-୭୯ : ଶୁକ୍ରବାର ॥

ବିଶେଷ କିଛି ଘଟିନି । କାମଭାବ ଆଜି କିଛି କମ୍ । କଲେଜ କଲି । ଆଶ୍ରମକୁ ଯାଇଥିଲି । କିନ୍ତୁ ଖୁବ୍ ଭିଡ଼ ଦେଖି ବୁଲି ଆସିଲି । କାହା ସହିତ କଥାବାର୍ତ୍ତା ହୋଇ ପାରିଲିନାହିଁ ।

ଆଜି ଭକ୍ତି ଅଳ୍ପ ହୋଇଛି । ଧୂବୁଡ଼ିରୁ ଫେରିବାର ସମୟରେ ବସରେ ଖୁବ୍ ନାମ ଜପ କରିଲି । ଜିଲ୍ଲା ଲାଇବ୍ରେରୀରୁ 'ଭକ୍ତେର ଜୟ' ବହି ଦ୍ୱିତୀୟ ଖଣ୍ଡ ଆଣିଲି । ରାତିରେ କିଛି ଘଟିନି ।

॥ ୨୯-୧୧-୭୯ : ଶନିବାର ॥

ଆଜି ମୁଁ କଲେଜ ନଜାଇ ଯୋଗମାୟା ଦେବୀଙ୍କ ଆଶ୍ରମକୁ ଗଲି । ଯୋଗମାୟା ଦେବୀ କହିଲେ, "କି ବେଟାର, କାଲିକ ଆସନାଇଁ କେନ ?" ମୁଁ କହିଲି 'କାଲି ସମୟ ପାଇଲିନାହିଁ ମା !' ଆଶ୍ରମରେ ଖିଆ ପିଆ କରିଲୁ । ମୁଁ, ବାବୁରାମ, ଅକ୍ଷୟ ନନ୍ଦଲାଲ ।

ସାଢ଼େ ଚାରଟାର ବସରେ ଫେରିଲୁ । କିନ୍ତୁ ଗୌରୀପୁରରେ ଆମ ଟ୍ରକକୁ ଦେଖି ବସରୁ ଓହ୍ଲାଇ ପଡ଼ିଲି ଗୌରୀପୁର ପର୍ଯ୍ୟନ୍ତ ପଇସା ଦେଇ । ଟ୍ରକଟି ଖୋଟରେ ଭର୍ତ୍ତି ହୋଇଥିଲା । ସେଥିପାଇଁ ଆମେ ସମସ୍ତେ ଖୋଟ ଉପରେ ବସି ପଡ଼ିଲୁ । ଖୁବ୍ ଥଣ୍ଡା ଲାଗିବାକୁ ଆରମ୍ଭ କଲା ।

ଅପରାହ୍ନରେ ଗୋପାଳ ସହିତ ପ୍ରଣବର ଘରକୁ ଗଲୁ । ପ୍ରଣବ ନାଗର ସବୁ ଭାଇମାନଙ୍କୁ ନମସ୍କାର କରି ଦେଇଛୁ । ମୁଁ ପ୍ରଣବ ପାଖରୁ ଗୋଟିଏ ଭ୍ରମଣ କାହାଣୀ ଆଣିଲି ।

|| ୩୦.୧୧.୬୯ : ରବିବାର ||

ସାତଟାରେ ଉଠିଲି । ସକାଳେ 'ଭକ୍ତେର ଜମ୍ବୁ' ବହିଟିକୁ ପଢ଼ିଲି । ତାପରେ ପ୍ରଣବ ପାଖକୁ ଗଲି । ଗୁରୁ ପାଞ୍ଚ ପ୍ରକାରର ଫୁଲଗଛ ଆଣିଲି । ତାପରେ ମୁଁ ଆଉ ପ୍ରଣବ ବଗ୍ଗିର ମିଆଁ ପାଖକୁ ଗଲୁ, ସେଠାରୁ ବି ଦୁଇ ତିନି ପ୍ରକାରର ଗଛ ଆଣିଲି । ବଗ୍ଗିର ମିଆଁକୁ ଦେବାକୁ ହେଲା ୧.୫୦ ପଇସା ।

ଦ୍ୱିପ୍ରହରରେ ଖିଆ ପିଆ ପରେ 'ଭକ୍ତେର ଜମ୍ବୁ' ବହି ଖଣ୍ଡିକ ନେଇ ବସିଲି । ଖୁବ ଭଲ ଲାଗିଲା । ଅପରାହ୍ନରେ ଧ୍ୟାନ କରିବାକୁ ଚେଷ୍ଟା କରିଲି ।

୩ଟା ବେଳେ, ଜଳ ଖାଇବା ପରେ, ଆମ ପୁରୁଣା ଗାଈ ଘରର ମାଞ୍ଚ ଉପରେ ଗୋଟିଏ ସୋପାର ବିଛାଇ ଆସନରେ ବସି ଧ୍ୟାନ କରିବାକୁ ଚେଷ୍ଟା କରିଲି । କିନ୍ତୁ ୧୦।୧୫ ମି. ପରେ ଆଖି ଖୋଲି ହୋଇଗଲା । ପୁଣି ଆଖି ବନ୍ଦ କରି ଧ୍ୟାନ କରିବାକୁ ଚେଷ୍ଟା କରିଲି, ଆଉ ମାଙ୍କ ନାମ ନେଲି । ୪ଟା ବେଳେ ଉଠି ଆସିଲି ।

ଅନିଲ୍ ଦାଙ୍କୁ ନେଇ ଅଭୟ ସାରଙ୍କ ଘରକୁ ଗଲି । ସନ୍ଧ୍ୟାପରେ, ମୁଁ, ନନ୍ଦଲାଲ ଆଉ ଅରୁଣ ନନ୍ଦଲାଲର ଦୋକାନରେ ବସି ଧର୍ମାଲୋଚନା କଲୁଁ । ରାତିରେ ପୃଥିବୀର 'ଶ୍ରେଷ୍ଠ ବକ୍ତୃତା ଗୁଚ୍ଛ' ନାଆଁର ଗୋଟିଏ ବହି ପଢ଼ିଲି । ବିବେକାନନ୍ଦଙ୍କ ବକ୍ତୃତାଟି ଖୁବ ଭଲ ଲାଗିଲା ।

ସାଢ଼େ ଦଶଟା ବେଳେ ଶୋଇ ପଡ଼ିଲି ।

|| ୧ ଡିସେମ୍ବର ୧୯୬୯ : ସୋମବାର ||

ଆଜି ଗୁରୁମାଙ୍କର ଜନ୍ମଦିନ, ୧୩୭୬ ଆଶ୍ୱିନ ।

ସକାଳ ଗାଡ଼ିରେ କଲେଜକୁ ଗଲି । କିନ୍ତୁ ଟ୍ରେନ ଡେରି କରିବାରୁ ପ୍ରଥମ ପିରିଅଡ କରିପାରିଲି ନାହିଁ । ଆଜି ଗାଧୋଇ ନାହିଁ ।

ଗୋଳକଗଞ୍ଜ ପ୍ଲାଟଫର୍ମରେ ଗାଡ଼ି ନ ଆସିବା ଯୋଗୁ ଅନେକ ସମୟ ରହିଥିଲି । ଅନେକ ବନ୍ଧୁ ବାନ୍ଧବଙ୍କ ସହିତ ଷ୍ଟେସନରେ ଦେଖା ହୋଇଥିଲା । ୩।୧୫ରେ କଲେଜ ଶେଷ ହେଲା । ମୁଁ ଧୁବୁରି ବଜାରକୁ ଆସିଲି । ମୋ ପାଇଁ ଗୋଟିଏ ପ୍ୟାଣ୍ଟ କପଡ଼ା ନେଲି । ନେଇ 'ଡ୍ରେସ୍‌କୋ' ପାଖରେ କପଡ଼ାଟି ପ୍ୟାଣ୍ଟ କରିବା ପାଇଁ ଦେଲି । ଦରଜି ମୋତେ ୨୦।୨୫ଟା କ୍ୟାଲେଣ୍ଡର ବାଣ୍ଟି ଦେବାକୁ ଦେଲା । ମୁଁ

ନେଇ ଆସିଲି ।

କ୍ୟାଲେଣ୍ଡରର ବୃକ୍‌ଲାଟି ନେଇ ମୁଁ ଯୋଗମାୟା ଆଶ୍ରମ ଆଡ଼କୁ ଛୁଟିଲି । ମାଙ୍କର ଦେଖା ପାଇଲି । ଅରୁଣ ଆଉ ନନ୍ଦଲାଲ ଆସିଥିଲେ, କିନ୍ତୁ ସେମାନଙ୍କୁ ନଡାଇଦା ୨୦ ଟଙ୍କାର ରସଗୋଲା ଆଣିବାକୁ ପଠାଇ ଦେଲେ । (ମାଙ୍କର ଜନ୍ମଦିନ ପାଇଁ) । କିଛି ସମୟ ପରେ ନନ୍ଦଲାଲ ଆଉ ଅରୁଣ ମିଠା ନେଇ ଆସିଲେ ।

ସନ୍ଧ୍ୟା ଆରତି ଆରମ୍ଭ ହେଲା । ଟ୍ରେନ ଟାଇମ ହେଲା । ମା ବାରମ୍ବାର ଆମ ମାନଙ୍କୁ ରହିବାକୁ କହିବାରୁ ଆମେ ରହିବାକୁ ସ୍ଥିର କଲୁଁ ।

'ଗୋବର୍ଦ୍ଧନ ବାଗାନ'କୁ ଗଲୁ । ସେଠାରେ ଜଣେ ଜ୍ୟୋତିଷ ରହେ । ସେଠାରେ ତାଙ୍କୁ ଆମେ ହାତ ଦେଖାଇଲୁ । ସେ ମୋର ହାତ ଦେଖି ଭଲ କହିଲା । ଅରୁଣକୁ ବେଶୀ ଭଲ କହିଲାନି । ନନ୍ଦଲାଲକୁ ବି ଭଲ କହିଲା । କିଛି ସମୟ ପରେ ଆଶ୍ରମକୁ ଫେରିଲୁ । 'ରାମ ମଙ୍ଗଳ' ଶୁଣିଲୁ । ଖିଆ ପିଆ କରି ଆଶ୍ରମରେ ଶୋଇ ପଡ଼ିଲୁ । କିନ୍ତୁ ନିଦ ଭଲ ହେଲାନି । କୌଣସି ପ୍ରକାରର ସ୍ୱପ୍ନ ଦେଖିନି ।

॥ ୨.୧୨.୬୯ : ମଙ୍ଗଳବାର ॥

ସକାଳ ୪ଟାରେ ଆମେ ଉଠିଲୁ । ବ୍ରହ୍ମପୁତ୍ର ନଦୀ କୂଳକୁ ଗଲୁ । ଝାଡ଼ା ଫିବା ପରେ ଆମେ ନଦୀରେ ଗାଧୋଇଲୁ । ୭ଟାରେ ମାଙ୍କର ଆରତି, ପୂଜା ଆଦି ଶେଷ ହେଲା । ଆମମାନଙ୍କୁ ଚା, ମିଠା ଦିଆହେଲା, ଖାଇଲୁ । ଆମମାନଙ୍କୁ ଖୁବ ଯତ୍ନ କରା ହେଲା ।

(ମା'ଙ୍କୁ ମୁଁ ହନୁମାନର ମନ୍ତ୍ର ଦେବାକୁ କହିଲି । ମା ଦେଲେ । ତାପରେ ମା' ଯୋଗମାୟା ଦେବୀ କହିଲେ ଯେ ବର୍ତ୍ତମାନ ଯେ କୌଣସି ସମୟରେ ମା' କାଳୀ ତୁମକୁ ଦେଖା ଦେଇପାରନ୍ତି । ମୁଁ ଶୁଣି ଖୁବ ଆନନ୍ଦିତ ହେଲି । )

ତାପରେ ମା' ନିଜର ଜୀବନର ଇତିହାସ କହିବାକୁ ଆରମ୍ଭ କରିଲେ । ମା ୧୬ ବର୍ଷ ବୟସରେ ମା' କାଳୀଙ୍କୁ ଦେଖିଲେ । ଆଉ ଅନେକ ଅଦ୍ଭୁତ ଅଦ୍ଭୁତ ଜୀବନର ସତ୍ୟ ଘଟଣା ସବୁ କହିଲେ ।

ଆମମାନଙ୍କ ପାଇଁ ଅଲଗା ଭାବରେ ଭୋଗଖିଆ ହେଲା । ଯିବା ସମୟରେ ମା ଯୋଗମାୟା ଦେବୀଙ୍କୁ ୫ ଟଙ୍କା ଦେଇ ଆସିଲି ।

କଲେଜ କରୁଛି । ଏତିକି ବେଳେ ଫୋନ ଆସିଲା । ମୁଁ ଗଲି । ବାବା ମୋତେ ଫୋନରେ ଖୁବ ଗାଳି ଦେଲେ ଘରକୁ ନ ଆସିବା ଯୋଗୁ । ବାବା, ମା ଖୁବ ଚିନ୍ତିତ ହୋଇଥିଲେ, ମୁଁ ନ କହି ଚାଲିଥିବାରୁ । ଅରୁଣ ଟ୍ରେନ ଫେଲ କରିବା ଯୋଗୁ, ଗୁଳି ଗୁଳି ଗୋଲକଗଞ୍ଜ ଗଲା । ନନ୍ଦଲାଲ ଘରେ ଖୁବ ଗାଳି ଖାଇଲା । ମୁଁ ମଧ୍ୟ ଖୁବ୍

ଗାଳି ଶୁଣିଲି । ଯୁଗଳ ଦା ବାବାଙ୍କୁ କହିଦେଲେ ଯେ ପୁରି ଧର୍ମ କର୍ମ କରିବା ଏକଦମ ବନ୍ଦ କରିଦିଅ । ନହେଲେ ତାର ମୁଣ୍ଡ ଖରାପ ହୋଇଯିବ ।

ମା' କାଳି ! ତୁମେ ଯେ ଯା କର ମଙ୍ଗଳ ପାଇଁ କରିଥାଅ, ଏକଥା ମୁଁ ସ୍ୱୀକାର କରେ ।

ରାତିରେ କିଛି ଦେଖିଲିନି ।

॥ ୩୧।୧।୭୯ : ବୁଧବାର ॥

ମା' ମୁଁ କଣ କରିବି । ମା' ଗୋ ମୋତେ କୁହ ନା, ମୁଁ କଣ କରିବି । ଆଗରେ କିଛି ଦେଖିପାରୁନି । ମା' ଗୋ ପରେ ମୁଁ ଅବହେଳା, ଅବଜ୍ଞାର ପାତ୍ର, ଉପହାସର ପାତ୍ର । ତୁମକୁ ଡାକିବା ପାଇଁ କୌଣସି ଭାଷା ପାଉନାହିଁ । ତଥାପି ତୁମେ ମୋ କଥା ଶୁଣୁନାହଁ । ମା' ମୁଁ ଯେ କେବଳ ତୁମକୁ ଚାହେଁ । ତୁମ ଉପରେ ଆଶ୍ରୟ କରି ମୁଁ ନିର୍ଭୟ ହେବାକୁ ଚାହେଁ । ମା' ଗୋ ମୁଁ ଯଦି କିଛି ଅପରାଧ କରିଥାଏ ତା ହେଲେ କ୍ଷମା କର । ମା' ମୁଁ ତୁମକୁ ଦେଖିବାକୁ ଚାହେଁ । ମା' ଦୟାକର ଗୋ, ଦୟାକର । ତୁମେ କଣ ଜାଣୁନ, କଣ ନଜାଣି ଯେ ତୁମେ ମୋ ପ୍ରାର୍ଥନା ଶୁଣୁନାହଁ । ମା' ମୁଁ ଭକ୍ତି, ବୁଦ୍ଧିହୀନ । କଣ କରିବି ଥଳ କୂଳ ପାଉନାହିଁ । ମା' ତୁମେ ମୋର ପାଖରେ ଅଛ, କିନ୍ତୁ ତୁମେ ମୋ ଉପରେ ଦୟା କରୁନାହଁ । ମା' ତୁମ ବିନା ମୋର ଜୀବନ ଶୂନ୍ୟ ହୋଇଯିବ । ମୋ ଦୟା କରିବା ମା' ତୁମକୁ କେମିତି ଡାକିବାକୁ ହେବ ମୁଁ ଜାଣେ ନାହିଁ । ମୁଁ ଯେମିତି ଡାକୁଛି ସେଥିରେ ସନ୍ତୁଷ୍ଟ ହୁଅ ମା' ! ମୁଁ ତୁମର ସନ୍ତାନ । ଆଉ ପରୀକ୍ଷା କରିବାର ଶକ୍ତି ନାହିଁ ମୋର । କୌଣସି ବସ୍ତୁର ଲୋଭ ଦେଖାଇ ମୋତେ ଭୁଲେଇ ନରଖ ମା' ! କୌଣସି ପ୍ରଲୋଭନ ଦେଖାଇଲେ, ସେଇ ପ୍ରଲୋଭନଠାରୁ ରକ୍ଷା ପାଇବାର ଶକ୍ତି ମୋର ଥାଇ ପାରେ ! ସେଥିପାଇଁ ମୋତେ ମା' ସବୁ ଦିଗରୁ ରକ୍ଷା କର ମା' । ମା ମା ମା ଗୋ । ଜୟ ମା କାଳୀ, ଜୟ ମା କାଳୀ, ମା' । କଲେଜକୁ ଗଲି । ଦର୍ଶନ ପିରିଅଡ୍ ହେଲାନି । ହୀରାଲାଲ, ଗୋବିନ୍ଦ ମୋତେ କ୍ଲବ୍ ବିହାରର ରାସ ଦେଖିବାକୁ ବାଧ୍ୟ କଲେ । କିନ୍ତୁ ମୁଁ କହିଲି ଯେ ମୁଁ ଯାଇ ପାରିବି ନାହିଁ ।

ଅପରାହ୍ନରେ ରାସ୍ତାରେ ଅରୁଣ ଦା' ଆଉ ନନ୍ଦଲାଲ ସହିତ ଦେଖାହେଲା । ଅରୁଣ ପଚାରିଲା, "ବର୍ତ୍ତମାନ ତୁମେ କେବେ 'ଆଶ୍ରମ ଯିବ ?" ମୁଁ କହିଲି ଅନ୍ତତଃ ୧୦।୧୫ ଦିନ ଯିବିନି । ସେତେବେଳେ ଅରୁଣ କହିଲା, ଆମକୁ ଗୁରୁ ମା' ନଦେଖିଲେ ଅସ୍ଥିର ହୋଇଯିବେ ।

ସନ୍ଧ୍ୟା ଆଗରୁ କିଛି ସମୟ ବ୍ୟାଡ୍‌ମିଣ୍ଟନ ଖେଳିଲି । ମୁଁ ଆଉ ବ୍ରାଉନ୍ ଗୋଟିଏ

ପଟରେ, ହୀରାଲାଲ ଥିଲେ ଜଣେ ପ୍ରଧାନ ଅନ୍ୟତମ ରେ । ଆମେ ହାରିଲୁ ।

ବ୍ୟାଡ୍‌ମିଣ୍ଟନ ଖେଳ ମୁଁ ଅରୁଣ ସହିତ ସିଂହ୍ମଙ୍କ ଦୋକାନ ଆଡ଼କୁ ଆସିଗଲି । ହଠାତ୍ ଗୋବିନ୍ଦ ଦତ୍ତର ସହିତ ଦେଖା ହେଲା । ସେ କହିଲା, "ମୁଁ ତୁମକୁ ତୁମ ଘରୁ ଖୋଜିକରି ଆସିଛି ।" ମୁଁ କହିଲି, "ମୋ ବାପା କଣ କହିଲେ ?" ସେ କହିଲା, "ଏଇ ରାସ୍ତାର ଏପଟେ କମ୍ପା ସେପଟେ ମିଳିବ ।" ମୁଁ ପଚାରିଲି, "ରୁକ୍ଷ ସ୍ୱରରେ କହୁଥିଲେ ନା କୋମଳ ସ୍ୱରରେ ?" ସେ କହିଲା ଯେ ତୁମ ବାବାଙ୍କର ସ୍ୱର ରୁକ୍ଷ ଥିଲା । ମୁଁ ଗୋବିନ୍ଦକୁ କହିଲି ରାତିରେ ଆମ ଘରକୁ ଆସିବାକୁ । ଆଉ ଗୋଟିଏ କଥା ଲେଖିବାକୁ ମୁଁ ଭୁଲି ଯାଇଛି । ସେଇ ଘଟଣା ଏଇ ଯେ, କଲେଜରୁ ଆସିବାପରେ, ମୋ ମା ଖୁବ୍ ବେଶୀ ମୋ ଅନ୍ୟ ଭାଇମାନଙ୍କ ପରି, ଖିଆ ପିଆ ଆଉ ସେମିତି ପଚରା ଉଚରା କରେନା । ଆଜି ଅମୃତ ଭଣ୍ଡାର ଦୁଇଟା ଖଣ୍ଡ ଥିଲା । ମୋ ମା ମିଠା ଟା ସାଉର ମଲକୁ ଦେଲା । ଆଉ ସଉଁଟା କମ ମିଠା ସେଇଟା ହାତରେ ନେଇ ମୁଁ ଖାଇବି କି ନାହିଁ ପଚାରିଲା । ମୁଁ ଜୋର କରି ବାହାରେ ଆନନ୍ଦ ପ୍ରକାଶ କରି ସେଇଟା ଗ୍ରହଣ କଲି । ଏଇ ଦୃଶ୍ୟରେ କିଛି ସମୟ ମନେ ମନେ ହସିଲି ଆଉ ଚିନ୍ତା କଲି । କିଛି ବାହାରେ ବି ହସିଲି । ପ୍ରଭୁ, ତୁମର ମାୟା ତୁମେ ଜାଣ । ଆମେ ଜାଣିବାକୁ ଅକ୍ଷମ । ମୋତେ ଏଇ ଦୁଃଖ ବ୍ୟଥା ଭିତରେ ମୋର କୌଣସି ମଙ୍ଗଳ ଆଇପାରେ । ଏଇ କଥା ଚିନ୍ତା କରି, ମୁଁ ମନେ ମନେ ଖୁବ୍ ଆନନ୍ଦିତ ହେଲି । ମା ଗୋ, ସବୁ ତୁମର ଲୀଳା !

× × × ×

ରାତିରେ ଗୋବିନ୍ଦ ଆସିଲା । ଗୋବିନ୍ଦ ସହିତ ଆଧ୍ୟାତ୍ମିକ ଆଲୋଚନା କରୁଛି, ସେତିକିବେଳେ ହୀରାଲାଲ ଆସିଲା । ହୀରାଲାଲ ଚୁଳ କାଟି, ଆଉ ଗୋଟିଏ ଭଲ ନୂଆ ସୁଏଟର ପିନ୍ଧି ଆସିଥିଲା । ସେ ସୁଏଟରରେ ସେ ଖୁବ୍ ସୁନ୍ଦର ଦେଖା ଯାଉଥିଲା । ମୋ ମନ ମୋହିତ ହୋଇଗଲା । ଗୋଟିଏ ଚେଆରରେ ଗୋବିନ୍ଦ ଥିଲା, ଆଉ ଗୋଟିଏ ଚେଆରରେ ମୁଁ ଥିଲି । ମୁଁ ହୀରାଲାଲକୁ ମୋର ଚେଆରରେ ବସାଇଲି । ହୀରାଲାଲକୁ ଦେଖି ମୋ ମନରେ କାମଭାବନା ଉଠିଲା । ଆଧ୍ୟାତ୍ମିକ ଚିନ୍ତା ଶହେ ମାଇଲ ଦୂରକୁ ପଳେଇଗଲା । । ମୁଁ କାମଭାବରେ ଆଚ୍ଛନ୍ନ ହୋଇଗଲି । ସେ ସମୟକୁ ଦେବାପାଇଁ ମୁଁ ରାଜି ହୋଇଗଲି । କାରଣ ରାତିରେ କୁଦ୍ ବାହାରେ ସେ ହୀରାଲାଲ ସହିତ ଗୋଟିଏ ଯାଗାରେ ଶୋଇ ପାରିବ, ଆଉ ରାତିରେ ସେମିତି ଯୌନ ଆନନ୍ଦ ଉପଭୋଗ କରି ପାରିବୁ । ମୁଁ ମୋ ମନ ନିକଟରେ ପରାଜିତ ହୋଇ ଯେତେବେଳେ ନିଜ ଶକ୍ତିରେ ଉଠିପାରିଲି ନାହିଁ, ସେତେବେଳେ ମୁଁ ମା'ଙ୍କୁ ଆଉ ହନୁମାନକୁ ମୋତେ ରକ୍ଷା କରିବାକୁ ଡାକିବା ଆରମ୍ଭ କଲି । ମା ବୋଧହୁଏ ମୋର ପ୍ରାର୍ଥନା ଶୁଣିଲେ । କମଳା

ଆଶ୍ରମ ବାଳକଙ୍କୁ ନେଇଗଲି । ପ୍ରାର୍ଥନା କଲିଁ । କାମଭାବ ଦୂରକୁ ଅପସରି ଯାଇ ଧର୍ମୀ ଆଧ୍ୟାତ୍ମିକ ଚିନ୍ତା ଧାରା ଆସିଲା । ଭାଗ୍ୟକ୍ରମେ ମନରେ ଅଟିକଲା ନାହିଁ । ମୁଁ କୁଚବିହାର ଯିବାର କଳ୍ପନା ତ୍ୟାଗ କଲି । ମୁଁ ଜୟୀ ହେଲି । ଗୋବିନ୍ଦକୁ ମୋ ଡାଇରୀର କେ ଫର୍ଦ୍ଦ ଶୁଣାଇଲି । ଗୋବିନ୍ଦକୁ ଆଧ୍ୟାତ୍ମିକ କଥା କହି ମୋହିତ କରିଦେଲି । ମୁଁ ଗୋବିନ୍ଦକୁ କହିଲି, ମୁଁ ନିଜକୁ ଜୟୀ କରିବାକୁ ଚେଷ୍ଟା କରୁଛି । ଗୋବିନ୍ଦ କହିଲା, 'ଦୁଇ ତିନିମାସ ଭିତରେ ତୁମର ବିରାଟ ପରିବର୍ତ୍ତନ ହୋଇଛି ।' ଗୋବିନ୍ଦ ଉପରେ ମୋର ବଡ଼ ପ୍ରଭାବ ପଡ଼ିଲା । ମୋତେ ଶ୍ରଦ୍ଧା ଭାବରେ ଦେଖିଲା, ଆଉ ମୋତେ ଜ୍ଞାନୀ ଭାବି ଭୁଲ କରିଲା । ମୋ ମନରେ ଅହଂକାରର ଭାବ ଆସିଲା । ମୁଁ ମନେ ମନେ ଖୁବ୍ ଆନନ୍ଦିତ ହୋଇଲି ।

ସାଢ଼େ ୧୧ଟା ପର୍ଯ୍ୟନ୍ତ ବିବେକାନନ୍ଦଙ୍କ ଲେଖା 'କର୍ମବାଣୀ' ବହିଟି ପଢ଼ିଲି । ବହିଟି ଖୁବ୍ ଭଲ ଲାଗିଲା । ବର୍ତ୍ତମାନ ମୋ ମନ-ପୁରର କାମଟି ଦେଖ, ଯେ ମୋ ସହିତ ଜାଗ୍ରତ ଅବସ୍ଥାରେ ଲଢ଼ି ନପାରି ରାତିରେ ଶୋଇଥିବା ବେଳେ ଆକ୍ରମଣ କରିଲା । ମୁଁ ପରାଜିତ ହୋଇଲି । ହାରାନଙ୍କୁ ରାତିରେ ସ୍ୱପ୍ନରେ ଦେଖିଲି । ସ୍ୱପ୍ନଦୋଷ ହେଲା ! ! !

ମା କାଳୀ ରକ୍ଷା କର !

॥ ୪ ଡିସେମ୍ବର ୧୯୬୯ : ଶୁକ୍ରବାର ॥

ଆଠଟାରେ ଉଠିଲି । ଉଠିବା ତେଣୁ ହେଲାରୁ କିଛି ସମସ୍ତେ ଖୋଜି ହେଲି । ମୁଁ ମନେ ମନେ ହସିଲି । ୧୧ଟା ବସ୍‌ରେ ଉଠିଲି । ୧୨।୧୫ରେ କ୍ଲାସ ଥିଲା । ଦର୍ଶନ କ୍ଲାସ କରିପାରିଲି ନାହିଁ । ହାରାଲାଲ ସହିତ ଧୁବୁଡ଼ିରେ ଦେଖା ହେଲା । ସାଥିହୋଇ ବୁଲିଲୁ । କିଛି କିଛି କାମ ଭାବ । ଉଠିଲା । ୩ଟା ବସ୍‌ରେ ଚାଲି ଆସିଲୁ ।

ଅପରାହ୍ଣରେ କେଉଁଠାକୁ ଯାଇନି ।

ବର୍ତ୍ତମାନ ମୋର ମାନସିକ ଅବସ୍ଥା ଉନ୍ନତିକ୍ରମ । ମୁଁ ଜ୍ଞାନ ଲାଭ କରିବାକୁ ଚାହେଁ । ମୁଁ ଚାହେଁ ମା କାଳୀଙ୍କ ପ୍ରତ୍ୟକ୍ଷ ଦର୍ଶନ । ମଝିରେ ମଝିରେ କାମରୂପୀ ଶତ୍ରୁ ମୋତେ ଆକ୍ରମଣ କରେ । କିନ୍ତୁ ମୁଁ ଶକ୍ତିହୀନ । ମା ତୁମେ ମୋତେ ଶକ୍ତି ଦିଅ । ମୋର କାମ ରୂପୀ ଶତ୍ରୁମାନଙ୍କ ସହିତ ଯୁଦ୍ଧ କରିବା ପାଇଁ । ମା' ମୁଁ ତୁମ ପାଖରେ ମୋ ନିଜକୁ ସମର୍ପଣ କରିବାକୁ ଚାହେଁ । ମା ତୁମ ଅବୋଧ ସନ୍ତାନ ଉପରେ ଦୟାକର । ମୋତେ ମନ୍ଦିରେ ବାହାରିବା ଶୋଭିତ କର । ମୋତେ ନମ୍ରକର, ମୋତେ ଅହଂକାରି-ହୀନ କର । ମା ମୋର ସବୁ କାର୍ଯ୍ୟ ତୁମର ଉପାସନାର ନିମିତ୍ତ ହେଉ ।

ରାତିରେ ଖରାପ (କାମଭାବ) ଚିନ୍ତା । ଆଉ ଶୋଇବା ଆଗରୁ ବ୍ୟାୟାମ କରିନ । ପାଣି ପିଇନି । ସେଥିପାଇଁ ବୋଧହୁଏ ସ୍ୱପ୍ନଦୋଷ ହେଲା ।

॥ ୫ ଡିସେମ୍ବର ୧୯୬୯ : ଶୁକ୍ରବାର ॥

୬।୧୫ ବେଳେ ନିଦ୍ରାଦେବୀ ମୋତେ ତ୍ୟାଗ କଲେ । ସ୍ୱାମୀ ବିବେକାନନ୍ଦଙ୍କ 'କର୍ମଯୋଗ' ନେଇ ପଢ଼ିଲି । ସକାଳେ ସ୍ୱପ୍ନଲାଲ ସହିତ ଦେଖାହେଲା । ସେ ବସ୍‌ଷ୍ଟାଣ୍ଡରେ ଠିଆ ହୋଇଥିଲା ସ୍କୁଲ ଯିବାକୁ । ଗୋଟିଏ ବସ୍ ଠିଆ ହୋଇଥିଲା, ମୁଁ କହିଲି ପର ବସ୍‌ରେ ଯିବା । କିନ୍ତୁ ସେ ସେହି ବସ୍‌ରେ ଗଲା । ପରେ ଶୁଣିଲି ସେହି ବସ୍‌ଟିର ଦୁର୍ଘଟଣା ହୋଇଛି । ସ୍ୱପ୍ନଲାଲ ବେଶୀ ଆଘାତ ପାଇନି ।

ମୁଁ ୧୦ଟା ବସ୍‌ରେ କଲେଜକୁ ଗଲି । 'BOC'ରେ ପଢ଼ିକି ଗୋବିନ୍ଦ ପାଖକୁ ଗଲି । ଗୋବିନ୍ଦ କହିଲା ଯେ ମୁଁ ତୋର କମ୍ପ୍ୟୁଟର 'ଏକ୍ସପେରିମେଣ୍ଟ'ଟା ଦେଇ ଦେଇଛି । କିନ୍ତୁ ହୋଷ୍ଟେଲକୁ ଯାଇ ସ୍ୱପ୍ନଲାଲ ସହିତ ଦେଖା କରିଲି । ମନରେ କାମ ଉଦୟ ହେଲା । ମନେ ମନେ ଭାବିଲି ଗୋବିନ୍ଦ ଘରକୁ ଯାଇ ତା ସହିତ ସେକ୍ସ କାମ କରିବି । ଗୋବିନ୍ଦ ଘରକୁ ଯାଉଛି, ଏତିକିବେଳେ ସ୍ୱପ୍ନଲାଲ କ୍ଲାସର ଜଣେ ପିଲା ଯାଉଥିଲା । ତା ସାଇକେଲରେ ଉଠି ସେ ବଜାରକୁ ଚାଲିଗଲା । ମୋତେ ମନେ ମନେ ଖୁବ୍ କ୍ରୋଧ ଲାଗିଲା । କିନ୍ତୁ କିଛି ସମୟ ପରେ ବିପଦରୁ ଉଦ୍ଧାର କରିବା ପାଇଁ ମା (କାଳୀ)ଙ୍କୁ ଧନ୍ୟବାଦ ଦେଲି । ଗୋବିନ୍ଦର ଘରେ ଏକୁଟିଆ ବସି ମା'ଙ୍କୁ ଡାକିଲି ।

ତାପରେ କଲେଜ କରିବାକୁ ଗଲି । ୪ଟା ବସ୍‌ରେ ଫେରି ଆସିଲି । ବସ୍‌ରେ ଯୁଗଳଦାଙ୍କ ଶଶୁର ସହିତ ଦେଖାହେଲା । ସେ ମୋତେ କୌଶଲ୍ୟାପୁରରେ ଓହ୍ଲାଇବାକୁ କହିଲେ । କିନ୍ତୁ ମୁଁ କହିଲି କାଲି ଯିବି । ଅପରାହ୍ନରେ ବାବୁରାମ, ଗୋପାଳ, ପ୍ରଣବ ସହିତ ବୁଲାବୁଲି, ଫୁର୍ତ୍ତି କଲି । ସ୍ୱପ୍ନଲାଲ ସହିତ ମଧ୍ୟ ଦେଖାହେଲା । କିନ୍ତୁ ସେ ବେଶୀ ସମୟ ରହିଲା ନାହିଁ । ଚାଲିଗଲା ଏବଂ କହିଲା "ମୋର ଭାତ ଖାଇବାର ସମୟ ହୋଇଛି ।"

ସ୍ୱପ୍ନଲାଲକୁ ପୁଣି ମୁଁ ବୁଝି ପାରୁନାହିଁ । ପୁଣି ଭଲପାଇବା ଆରମ୍ଭ କରିଛି । ସେ ପୁଣି ମୋତେ ଉପେକ୍ଷା କରିବା ଆରମ୍ଭ କରିଛି । କି ବିଚିତ୍ର କଥା ! ମୁଁ ଯେତେବେଳେ ତାକୁ ଭଲପାଏ ସେତେବେଳେ ସେ ମୋତେ ଭଲ ପାଏନି । ଆଉ ସେ ଯେତେବେଳେ ମୋତେ (ବୋଧହୁଏ) ଭଲପାଏ ସେତେବେଳେ ମୁଁ ତାକୁ ଘୃଣା କରେ । ମା' କାଳି ତୁମେ ମୋତେ ରକ୍ଷା କର ! ବଞ୍ଚାଅ ! ମୋ ପରି ମୋ ମାଆଙ୍କ ସ୍ନେହ ଅନ୍ୟ ସବୁ ଭାଇମାନଙ୍କ ଭଳି ହିଁ ଅଛି । ମୁଁ କାଲି ଭୁଲ ବୁଝିଥିଲି । ମୁଁ ମା ସହିତ ରାଗ ରାଗି କଲେ ମାଆ ବି ମୋ ଉପରେ ରାଗିଯାଏ । ମା ମୋର ଖୁବ୍ ଭଲ । ମୋ ଉପରେ ତା'ର ଖୁବ୍ ସ୍ନେହ ଅଛି । ଆଜି ମା ଦୁଧ କମ୍ ଥିବାରୁ ମୋ ଶ୍ରେଷ୍ଠ ଭାଇଙ୍କୁ ନଦେଇ ମୋତେ ଦେବାକୁ ଇଚ୍ଛା କଲେ । ମୁଁ କହିଲି ଯେ ମୋର ଖାଇବାର ଇଚ୍ଛା ନାହିଁ । ମୋ ଶ୍ରେଷ୍ଠ ଭାଇମାନଙ୍କୁ ଦେଇଦିଅ ।

।।୭ ଡ଼ିସେମ୍ବର ୧୯୬୯ : ଶନିବାର ।

୭।୧୦ । ଛାଦ ଭାଙ୍ଗିଲା । ମୋର ଜଣେ ବନ୍ଧୁ ଓଁରେଘଲ ଶର୍ମା (ତୁଳସୀ ରାମଙ୍କ ପୁଅ) ସହିତ ଅନେକ କିଛି ବର୍ମା ମଧ୍ୟରେ ଦେଖାହେଲା । ବହୁତ କଥା ବାର୍ତ୍ତା କଲ ।

ସକାଳେ ମୋ ମା'ଙ୍କୁ (କାଲୀଙ୍କୁ) ମୋର କାମ ବାସନା ଦୂର କରିବା ପାଇଁ ପ୍ରାର୍ଥନା କଲି । ଅଜି ୧୨ଟାରେ କ୍ଲାସ ଥିଲା । ମୁଁ ଗୋଟିଏ ବସ୍‌ରେ ଉଠି କାଲକାନ୍ ପାଖିନ୍ତ ଗଲି । ତାପରେ କାଲକାନ୍‌ରୁ ବସ୍‌ରେ ଧୁବୁଲ ଗଲି । କ୍ଲାସ କରିବା ପରେ ଯୋଗମାୟା ଦେବୀଙ୍କ ଅଶ୍ରମକୁ ଗଲି । ଯୋଗମାୟା ଦେବୀଙ୍କୁ ପାଇଲି ନାହିଁ । ଅନ୍ତତଃ ତାଙ୍କ ସହିତ ଦେଖାହେଲା । ସେଠାରେ ଜଣେ ଲୋକ ସହିତ ପରିଚୟ ହେଲା । ସେହି ଲୋକଙ୍କର ଘର ସପଟ ଗ୍ରାମ । ତାଙ୍କର ନାଁ ଶ୍ରୀ ଭବାନୀ କୁମାର ଚକ୍ରବର୍ତ୍ତୀ । ସେଇ ଲୋକଟି ଧର୍ମ ସମ୍ବନ୍ଧରେ ମୋତେ ଉପଦେଶ ଦେଲେ । ଗୋଟିଏ ଘଣ୍ଟାରୁ କମ ସମୟ ଭିତରେ ଲୋକଟି ମୋ ସହିତ ଖୁବ ଘନିଷ୍ଠ ହୋଇ ଗଲା । ସେ ମୋତେ ଥରେ ଦେଖାକୁ କହିଲେ । ମୁଁ ତାଙ୍କୁ ଚୁଁ ଛୁଁଇଲି ।

ଅପରାହ୍ନରେ ଗୋଲାକଗଞ୍ଜରେ ହରିଲାଲ ସହିତ ଦେଖା ହେଲା । ପୁଣି କାମଭାବ ଉଠିଲା । ହରିଲାଲକୁ ବ୍ୟାଡ଼ମିଣ୍ଟନର କୋର୍ଟ କାଟିବା କଥା କହିଲି । ହରିଲାଲ ସକାଳ କଥା କହିଲା ।

ଆଜି ଗୌରୀପୁର ଯାଇଥିଲି । ମୋର ଝିଆରୀ ଉଷାକୁ ଦେଖି ଆସିଲି । ଆସିବା ସମୟରେ ସମ୍ପଦଲାଲର ମଟର ସାଇକେଲରେ ଆସିଲି । ଆଜି ମୋ ପିଉସୀ ପୁଅ ଭାଇ ରାଧେଶ୍ୟାମ ଆସିଲା । ବର୍ଷେ ଦେଢ଼ବର୍ଷ ପରେ ସେ ଆସିଲା ।

ରାତିରେ ଅଭୟ ସାହୁଙ୍କ ସହିତ କତିପୟ ବିଷୟରେ ଆଲୋଚନା ହେଲା । ମା' ମୋ ମୁକ୍ତି ଦିଅ ।

ମୁଁ ଅଜି ଭୀଷଣ ଭାବରେ କାମ ଶତ୍ରୁ ଦ୍ୱାରା ପୀଡ଼ିତ । ରାତିରେ ସ୍ୱପ୍ନଦୋଷ ହେଲା ।

।। ୭।୧୨।୬୯ : ରବିବାର ।।

ମୁଁ କାମଶତ୍ରୁ ଦ୍ୱାରା ଭୀଷଣ ଭାବରେ ପୀଡ଼ିତ । ହରିଲାଲ ପାଇଁ ମୁଁ ପୁଣି ଅଗଭାର ପାଗଲ ।

୯ଟାରେ ମୁଁ ନୂଆ ପ୍ୟାଣ୍ଟ ପିନ୍ଧି ହରିଲାଲ ପାଖକୁ ଗଲି । ହରିଲାଲ ମୋତେ ବ୍ୟାଡ଼ମିଣ୍ଟନ କୋର୍ଟ କଥା କହିଲା । ମୁଁ ମଧ୍ୟ କହିଲି ମୁଁ ଏଇଥିପାଇଁ ଆସିଛି । ପ୍ରଣବ ପାଖକୁ ଗଲୁ । ପ୍ରଣବ ଘରେ ନଥିଲା । ତାର ମା'ଙ୍କ ସହିତ କିଛି ସମୟ ପ୍ରଣବ ବିଷୟରେ କଥାବାର୍ତ୍ତା କରି ଆସିଲି । ପ୍ରଣବ ମା ମୋତେ କହିଲେ ଯେ ତାଙ୍କର

ସେଠାକୁ ମଝିରେ ମଝିରେ ଜଣେ କାଳୀ ଭକ୍ତ ସାଧକ ଆସେ। ମୁଁ କହିଲି ଏଥର ଆସିଲେ ମୋତେ ଖବର ଦେବେ।

ତାପରେ ମୁଁ ଓ ହୀରାଲାଲ ଭୁବନ ପାଖକୁ ଗଲୁ। ଭୁବନଙ୍କ ବାପା ବାହାରେ ଛିଡ଼ା ହୋଇଥିଲେ। ଭୁବନର ବାପା ପଚାରିଲେ କଣ ଦରକାର। ମୁଁ କହିଲି ଯେ ଜଗମୋହନକୁ ବ୍ୟାଡ଼ମିଣ୍ଟନର କୋର୍ଟ କାଟିବୁ। ସେତେବେଳେ ଭୁବନର ବାପା ସୁଧୀରକୁ ଡାକିକି କହିଲେ ଯେ ତୁ ମୋତେ ସକାଳୁ ସକାଳୁ ଜଗମୋହନର ନାମ ଶୁଣାଇଲୁ, ଆଜି ମୁଁ ଭାତ ଖାଇବି ନାହିଁ। ମୁଁ ହସିଲି। ଭୁବନ କହିଲା ଯେ ମୁଁ ଅଧଘଣ୍ଟା ପରେ ଯାଉଛି।

ମୁଁ, କମଳ ଆଉ ହୀରାଲାଲ କୋର୍ଟ କାଟିବା ଆରମ୍ଭ କରୁଛୁ ବାବା ମୋତେ ଡାକିଲେ। କହିଲେ ଯେ ନଗାଁର ରାଧେଶ୍ୟାମ ସହିତ ଧୁବୁରି ଯିବାକୁ ହେବ। ମୁଁ କେତେକଣାକୁ ସବୁ କାମ ଛାଡ଼ି ଦେଇ ଧୁବୁରି ଯିବାକୁ ପ୍ରସ୍ତୁତ ହେଲି। ପ୍ରଥମେ ଓହ୍ଲେଇଲି ଗୌରୀପୁରରେ। ମୁଗଲଦାର ଦୋକାନରେ। ତାପରେ ଧୁବୁରି ଗଲି। ଗୁଓନ ମଲ୍ଲ ଆଉ ଭୂପର ମଲ୍ଲ ପାଖକୁ ଗଲି। ଗୋଟିଏ ବ୍ୟାଡ଼ମିଣ୍ଟନର ନେଟ୍ କିଣିଲି। ୬ଟାରେ ଗୋଲକଗଞ୍ଜ ଫେରି ଆସିଲି। ଆପ୍ସେଣ୍ଟରେ ଆମେ ବ୍ୟାଡ଼ମିଣ୍ଟନ ଖେଳିବାର ସ୍ଥିର କଲୁ। ମୁଁ ହୀରାଲାଲ ପାଖକୁ ମୋର ଗ୍ରେଟଭାଇକୁ ପଠାଇ ଦେଲି ର୍ୟାକେଟ ପାଇଁ। ସେ ସଫା ସଫା ମନା କରିଦେଲା। ସେ କହିଲା ଯେ ମୁଁ ଦେବିନି। ମୋର ମନରେ ଖୁବ୍ ଆଘାତ ଲାଗିଲା। ତାପରେ ଆଉ ବ୍ୟାଡ଼ମିଣ୍ଟନ ଖେଳିବା ହେଲନାହିଁ। ହୀରାଲାଲକୁ ଆମ ମେଟିରୁ ବାହାର କରିଦେବାକୁ ଇଚ୍ଛା ହେଲା। ଆଜି ତା ପ୍ରତି ଗୋଟିଏ ଘୃଣା ସୃଷ୍ଟି ହେଲା।

ମୋର ପିଉସୀ ପୁଅ ଭାଇ ରାଧେଶ୍ୟାମ ଆଉ ଗ୍ରେଟ ବେଲର ବନ୍ଧୁ ଭାଁଓଲାଲ ସନ୍ଧ୍ୟା ଗାଡ଼ିରେ ଚାଲିଗଲେ। ମୁଁ ଷ୍ଟେସନକୁ ଛାଡ଼ି ଦେବାକୁ ଗଲି। ଷ୍ଟେସନରେ ରାମନାରାୟଣ ଓ ରବଦାସ ସହିତ ଦେଖା ହେଲା।

ଆଜି ମୋର ଦିନଟି ଆନନ୍ଦରେ ଯାଇଛି। ମା କାଳୀ ! ତୁମେ ଯାହାକର ଆମ ମାନଙ୍କ ମଙ୍ଗଳ ପାଇଁ ହିଁ କରଥାଅ।

॥ ୮.୧୨.୭୯ : ସୋମବାର ॥

ସକାଳ ୭।୩୦ରେ ଉଠିଲି। ସକାଳେ ପ୍ରଣବର ଘରକୁ ଗଲି। ମନ୍ଦାର ଫୁଲର ଗଛ ଦେବାର କଥା ଥିଲା। ପ୍ରଣବ ଘରେ ଥିଲା। ପ୍ରଣବର ବଗିଚାକୁ ବୁଲି ବୁଲି ଦେଖିଲି। ପ୍ରଣବ ମୋତେ ଗଛ ଫଳ ସବୁ ଦେଖାଇଲା। ପ୍ରଣବ କହିଲା ଯେ ମୁଁ ମୋପାଇଁ ଏଇ ବଗିଚା ଭିତରେ ଗୋଟିଏ ଘର କରିବ। ପ୍ରଣବର ବଗିଚାଟି ଖୁବ୍ ଭଲ ଲାଗିଲା। ପ୍ରଣବ ସହିତ ତାଙ୍କର ଲେଖା ବିଷୟରେ ବହୁତ କଥାବାର୍ତ୍ତା ହେଲା। ମନ୍ଦାର

ଫୁଲର ଗଛ ଆଣି କୁଅ ପାଖରେ ଥିବା ବଗିଚାରେ ପୋତି ଦେଲି । ତା ପରେ, ବଗିଚାରେ କିଛି କାମ କଲି ।

୧୧ଟାରେ କଲେଜକୁ ଗଲି । ପ୍ରଥମ ପିରିଅଡ଼ଟି ଧରି ପାରିଲି ନାହିଁ । ଇଂରାଜୀ ଥିଲା । ବାକି ଦୁଇ ପିରିଅଡ଼ ରାଜନୀତି ବିଜ୍ଞାନ ଆଉ ଦର୍ଶନ କଲି । ଏମ୍. ଆଇ. ଏଲ୍. ହେଲା ନାହିଁ, କ୍ଲାସ ସବୁ ମନ ଯୋଗ ଦେଇ ଶୁଣିନି । ମୋ ମନକୁ କାମ ଭାବପୂର୍ଣ୍ଣ ଚିନ୍ତା ଅଧିକାର କରିଥିଲା । ତା ଭିତରେ ହୀରାଲାଲ ବିଷୟରେ ମନେ ମନେ ଭାବୁଥିଲି । ମୋର ମନରେ ଭାବିଥିଲି, କେତେବେଳେ ପ୍ରୋଫ୍ କ୍ଲାସରୁ ବାହାରକୁ ଯିବେ ଆଉ ମୁଁ ହୀରାଲାଲ ସହିତ ଦେଖାକରି ପାରିବି ।

ଦୁଇଟାରେ କଲେଜ ଛୁଟି ହେଲା । ମୁଁ ଗୋବିନ୍ଦର ସାଇକେଲ ନେଇ ବଜାରକୁ ଯାଇ ଗୋଟିଏ ର୍‍ୟାକେଟ ୧୩ ଟଙ୍କା ଦେଇ କିଣିଲି । ସାଢ଼େ ୩ଟାରେ ଗୋଲକ-ଗଞ୍ଜରେ ପହଞ୍ଚିଗଲି ।

ହୀରାଲାଲ ସହିତ ଦେଖାହେଲା । ହୀରାଲାଲ କହିଲା କାଲି ମୋର ର୍‍ୟାକେଟ ତାର ଘର ବାକ୍ସରେ ଥିଲା । ସେ କେଉଁଠି କୋଉଠିକି ଯାଇଥିଲା ସେଥିପାଇଁ ଦେଇ ପାରିଲା ନାହିଁ । କିନ୍ତୁ କଥାଟା ମୋତେ ସେମିତି ଲାଗିଲା ନାହିଁ । ମୋର ମନେହୁଏ ହୀରାଲାଲ ଖୁବ୍ ସ୍ୱାର୍ଥପର । ମୁଁ ଯଦି ହୀରାଲାଲକୁ ଭଲ ନପାଉଥାନ୍ତି, ତା ହେଲେ କୋଉ ଦିନରୁ ତା ସହିତ କଥାବାର୍ତ୍ତା ବନ୍ଦ କରି ଦେଇଥାନ୍ତି । ହୀରାଲାଲକୁ ଭଲ ପାଇବା ଯୋଗୁ ମୋର ଗୋଟିଏ ଖୁବ୍ ବଡ଼ ଉପକାର ହୋଇଛି । ସେଇଟା ହେଲା ଏଇ ଯେ ମୁଁ ହୀରାଲାଲକୁ ଭଲ ପାଇବା ଯୋଗୁ ମୁଁ ଗୌହାଟୀରେ ନାମ ନକଲେଇ ଧୁବୁଡ଼ିରେ ନାମ ଲେଖିଲି । ଆଉ ଧୁବୁଡ଼ିରେ ପଢ଼ିବାରୁ ଯୋଗମାୟା ଦେବୀଙ୍କ ସହିତ ଘନିଷ୍ଠତା ହେଲା । ଆଜି ମୋର ଦୀକ୍ଷା ନେବା ହେଲା ।

ଆଜି ବ୍ୟାଡ଼ମିଣ୍ଟନର କୋର୍ଟ କାଟିଲି । ତା ପରେ ମୁଁ ନିୟମ କରିଦେଲି ଯେଉଁମାନେ ଏଠାରେ ଖେଳିବେ ସେମାନଙ୍କର ର୍‍ୟାକେଟ ଗୋଟିଏ ଯାଗାରେ ରହିବ । ହୀରାଲାଲ ଆଉ ଅନୁପର ଇଚ୍ଛା ନଥାଇ ସତ୍ତ୍ୱେ କହିଲେ ଯେ ଆମେ ରାଜି ଅଛୁ । ହୀରାଲାଲ ଖେଳ ଆରମ୍ଭ ହେବା ଆଗରୁ କହିଲା ଯେ ବହୁତ ବେଶୀ ପିଲା ହୋଇଯାଇଛନ୍ତି । ବାହାରର ଲୋକମାନଙ୍କୁ ଖେଳିବାକୁ ଦେବା କି ନଦେବା । ଏମିତି ଆଉ ସାତ୍ ପ୍ରଶ୍ନ । ମୋର ରାଗ ଉଠିଲା । ମୁଁ କହିଲି ଆଗେ ଖେଳ ଆରମ୍ଭ ହେଉ । ବାକି ସବୁ ପରେ ଦେଖାଯିବ ।

ସନ୍ଧ୍ୟାବେଳେ ମୋ ସହିତ ଜଣେ ନୂଆ ଲୋକ ସହିତ ଚିହ୍ନା ପରିଚୟ ହେଲା କମଳ ଦ୍ୱାରା । ଲୋକଟିର ନାମ ପଞ୍ଜିତ ଦତ୍ତ । ସେ ଇଞ୍ଜିନିୟରିଂ ପାସ କରିଛନ୍ତି । ସେ ମୋଠାରୁ କିଛି ବହି ନେଇଥିଲା । ମୁଁ କହିଲି କାଲି ଦେବି । ନନ୍ଦଲାଲ ସହିତ ଦେଖା

ହେଲା । ଅନେକ କଥାବାର୍ତ୍ତା ହେଲା । ମିଣ୍ଟୁ ସହିତ ମଧ୍ୟ କଥାବାର୍ତ୍ତା ହେଲା ।

॥ ୧୦.୧୨.୭୯ : ବୁଧବାର ॥

ଏସବୁ କାମ କରିବ । ନହେଲେ ମୁଁ ମରିଯିବି ନୁହେଁ । ଯଦି କରିନପାରିବ ତାହେଲେ ଗୋଟିଏ କୋଳା ନଖାଇ ରହିବ ।

୪ଟାରେ ଉଠିବ ।

୪ ରୁ ୭ — ସ୍ନାନ ଏବଂ ଗୀତା ପାଠ

୭ ରୁ ୭.୩୦ — ହନୁମାନ ମନ୍ଦିର

୭.୩୦ ରୁ ୮ — ଦର୍ଶନ

୮ ରୁ ୮.୪୫ — ବଗିଚା କାମ

(ଏହା ଭିତରେ ପାଇଖାନା ଏବଂ ଗୁଡ଼ ଖାଇବା ଅଛି ।)

କଲେଜକୁ ଯିବା ଆଗରୁ ବାବୁରାମର ଟଙ୍କା ଏବଂ 'ଅଣ୍ଡର ଆର୍ମ' ଧୋବାରେ ସାର୍ଟରର ଔଷଧ, କାଲି ଲାଇବ୍ରେରୀ । ବି.ଏଡ଼. କଲେଜର ବହି ଜମା ଦେବା ଲାଗିବ ।

ଗୋଲକଗଞ୍ଜ—

ରଞ୍ଜିତ ମାଉସୀଙ୍କୁ ଫୁଲଗଛ ଆଣିବ । ସମୟ ହେଲେ ବ୍ୟାଡ଼ମିଣ୍ଟନ ଟିକେଟିବ, ପ୍ରଣବ ସହିତ ନନ୍ଦଲାଲଙ୍କୁ ଯମୁନା କଥା କହିବାକୁ ପଠାଇବ ।

॥ ୯.୧୨.୭୯ : ମଙ୍ଗଳବାର ॥

ଆଜି ୭।୩୦ରେ ମୋ ନିଦ ଭାଙ୍ଗିଲା । ବାବୁରାମର ବାବା ମୋତେ ବାବୁରାମ ପ୍ୟାଣ୍ଟ ଧୋବାରେ ଦେବାକୁ କହିଥିଲେ, ମୁଁ ଭୁଲିଗଲି ।

ମା ମନରେ ମୁଁ ଅଳ୍ପ ଆଘାତ ଦେଲି । କାରଣ ମୁଁ ଧବଳେଶ୍ୱରରୁ ଫେରିବା ସମୟରେ ଟ୍ରେନରେ ଆସିଥିଲି । ଆଉ ଟ୍ରେନ ଲେଟ କରିବାରୁ ମୁଁ ୭।୩୦ରେ ପହଞ୍ଚିଲି । ଘରେ ପହଞ୍ଚିବାର ସାଙ୍ଗେ ସଙ୍ଗେ ମୋ ମା ମୋତେ ମିଠା ଭାଷାରେ ସମ୍ଭାଷଣ କଲେ । ମା କହିଲା ତୁ ଏତେ ଡେରି କାହିଁକି କଲୁ । ମୁଁ ବର୍ତ୍ତମାନ ତୋର ବାପାଙ୍କୁ କହୁଥିଲି ଯେ ରାଜୁ ଆଜିକାଲି 'ବୁଲେଟ୍' (ଆଉଡ଼ା ପିମ୍ପୁ) ହୋଇଯାଇଛି । ମା ଉପରୋକ୍ତ କଥା ବାପାଙ୍କୁ ହସର ଛଳରେ କହିଥାଲେ । ଆଉ ମୋତେ ଏମିତି ଅଭୋଗମସାରେ କହିଲା ଯେ ମୁଁ ବର୍ତ୍ତମାନ ତୋର ବାପାଙ୍କୁ ଏସବୁ କଥା କହିଥିଲି । ମୁଁ ଏସବୁ କଥା ଶୁଣି ରାଗି ଜଳିଗଲି । ମା'କୁ ଧମକାଇ କହିଲି ଯେ ତୁ ମୋ ବିଷୟରେ ଏସବୁ ବାଜେକଥା କହିବୁନି । ମୁଁ ତ ମୋ ପାଇଁ ଡେରି କରିନି । ମୁଁ ସାର୍ଟରର ଔଷଧ ପାଇଁ ଡେରି କରିଥିଲି । ମା କହିଲେ ଯେ ମୁଁ ତ ତୋ ବିଷୟରେ କିଛି ଖରାପ କହିନି । ଏମିତି ହସ ଛଳରେ ଏସବୁ କଥା କହିଲି । ହାସ୍ୟ ହାସ୍ୟ ମୁଁ

ଯେ ମୋତେ ଦଶମାସ ଗର୍ଭରେ ଧାରଣ କଲା, ଯିଏ ମୁଁ ଦୁଃଖରେ ଥିଲେ ଦୁଃଖୀ ଆଉ ସୁଖରେ ରହିଲେ ସୁଖୀ, ଯେଉ ମୋ ସ୍ୱୟଂ ଜନ୍ମଦାତ୍ରୀ ମନରେ ସୁଖ ଦେବା ଛାଡ଼ି ମନରେ ଆଘାତ ଉପରେ ଆଘାତ ଦେଉଛି । କି ନିଷ୍ଠୁର ମୁଁ ! ମା ! ମୋତେ ସୁବୁଦ୍ଧି ଦିଅ ।

ଆଜି ବିଶେଷ କିଛି ଘଟିନି । ଯୋଗମାୟା ଦେବୀଙ୍କ ଆଶ୍ରମକୁ ଯାଇଥିଲି କିନ୍ତୁ ସେ ଶୋଇଥିଲେ । କଥାବାର୍ତ୍ତା ହୋଇନି । ମୁଁ କେତେ ତଳକୁ ଖସି ଯାଇଛି ! କିଛି ଦିନ ହେଲା ମା କାଳୀଙ୍କ ନାମକୁ ବାଦ ଦେଇ ବାକେ, କାମପୂର୍ଣ୍ଣ ଚିନ୍ତା କରୁଛି । ସ୍ୱାର୍ଥ ଛଡ଼ା କିଛି କରୁନାହିଁ, ଭାବୁ ନାହିଁ । ଅହଂକାର ଭୀଷଣ ଭାବରେ ଅଛି । ମୁଁ ମନେ ମନେ ଭାବେ ମୁଁ କିଛି ଗୋଟାଏ ବଡ଼ ହୋଇଯାଇଛି । ହାୟ ରାମ୍ ! ମୋତେ ସୁବୁଦ୍ଧି ଦିଅ ।

ଆଜି ସକାଳେ ରଞ୍ଜନ ଦତ୍ତ ଘରକୁ ଯାଇଥିଲି "ଚିନ ଅଙ୍କ" ବହି ଦେଇ । ତାଙ୍କ ପାଖରୁ କେତେ ପ୍ରକାରର ଫୁଲଗଛ ଚିହ୍ନିବାରୁ ସେ କହିଲେ, "ଆପଣ କାଲି ନେଇଯିବେ ।" ଆଜି ଆଶ୍ରମ ଯିବା ପରେ ମୋ ମନ ପବିତ୍ର ହେଲା । ଆଉ କାମଭାବନା ପଛରେ ଘୂରିବାରୁ ମୁଁ ନିଜକୁ ଧିକ୍କାର କଲି । ଆଉ ବିଶେଷ କିଛି ଘଟିନି ।

ମୋ ଶ୍ରେଷ୍ଠ ଭାଇ ଦିଲ୍ଲୀପ ମୋତେ କର୍କ ଆଣିବାକୁ କହିଥିଲା, ମୁଁ ନ ଆଣି ତା ମନରେ ଆଘାତ ଦେଲି । ମୁଁ ହୀରାଲାଲର ଭାଇଠୁ ଭଲ ହୋଇଯାଇଛି । ନିଜକୁ ମଜବୁତ୍ କରିବାକୁ ହେବ । ନିଜକୁ କାମର ପୁତୁଳା କରିଲେ ଚଳିବ ନାହିଁ । ତା ହେଲେ ମୋ ଜୀବନ ଧ୍ୱଂସ ହେବ । ମୋର ମାନବ ଜୀବନ ବୃଥାରେ ଯିବ ! ! ! ରାତିରେ ସ୍ୱପ୍ନଦୋଷ ହେଲା । ୪ଟାରେ ଉଠିବା ହୋଇନି ।

॥ ୧୦.୧୨.୧୯୭୯ : ବୁଧବାର ॥

ସବୁଦିନ ପରି ସକାଳେ ଉଠିଲି । ମୋର କାଲିର ପ୍ରତିଜ୍ଞା ରକ୍ଷା ହୋଇ ପାରିଲା ନାହିଁ । ଆଜି ମୋର ମନ କାଲି, ପହିଲି ଦିନ ତୁଳନାରେ ବହୁତ ପବିତ୍ର । ସବୁଦିନ ପରି ମା'ଙ୍କର ମନ୍ତ୍ର, ଗୁରୁ ମନ୍ତ୍ର ଆଉ ହନୁମାନ ମନ୍ତ୍ର ଜପ କଲି । ମନଟି ଭଲ ଲାଗୁଛି । ଆଜି କାମଭାବ ବେଶୀ ନାହିଁ, ଅଥବା ମୋଟେ ନାହିଁ କହିଲେ ବି ଚଳିବ ।

କଲେଜକୁ ଗଲି । କ୍ଲାସ ହେଲା । ଇଦ୍ ପାଇଁ ଆଜି ୧୨।୫ରେ କ୍ଲାସ୍ ଶେଷ ହେଲା । ମୁଁ କଲେଜ ଛୁଟି ପରେ ଗୋବିନ୍ଦ ସହିତ ଗଲି । ବାବୁରାମ ସହିତ ଦେଖା ହେଲା । ମୁଁ ବାବୁରାମକୁ କଦଳୀ ଆଣିବା ପାଇଁ ୫୧।୫୦ ଦେଲି । ବାବୁରାମ କଦଳୀ ନେଇ ଆସିଲା । ବାଦଲ ଆସିଲା । କଦଳୀ ଆଉ ଚୁଡ଼ା ଖାଇଲୁ । ଖୁବ୍ ମଉଜ ମଜଲିସ୍ ହେଲା । ମୁଁ ବାବୁରାମ କଥା ବେଶୀ କହୁଥିବାରୁ କହିଲି, "ବାବୁରାମ ଇଜ୍ ନଥିଙ୍ଗ୍ ବଟ୍ ଏ ଭେସେଲ ଅଫ୍ ସାଉଣ୍ଡ" (ବାବୁରାମ କେବଳ ଶବ୍ଦ ଗୋଟିଏ ମାଠିଆ)

ବାବୁରାମ, ଗୋବିନ୍ଦ ଆଉ ମୁଁ ଆଶ୍ରମକୁ ଗଲୁ । ମା' (ଯୋଗମାୟା)ଙ୍କ ସହ ଦେଖା ହେଲା । ମୁଁ ମା'ଙ୍କୁ କହିଲି ମୋର ମନ ଏଇ ୫।୬ ଦିନ ହେଲା କାମଭାବାପୂର୍ଣ୍ଣ ଥିଲା । ମା କହିଲେ ଯେ ମଝିରେ ମଝିରେ ଆକାଶରେ ମେଘ ଆସେ, ପୁଣି ଚାଲିଯାଏ । ଠିକ୍ ସେଇପରି ମନରେ ମଝିରେ ବାଜେ ଚିନ୍ତା ଆସେ କିନ୍ତୁ ସେଗୁଡ଼ିକ ପୁଣି ଚାଲିଯାଏ । ମୁଁ ଆଉ କିଛି ପଚାରିଥାନ୍ତି କିନ୍ତୁ ବାବୁରାମ ଆସିଗଲା । ଅନ୍ୟମାନଙ୍କ ଆଗରେ ଏସବୁ କଥାବାର୍ତ୍ତା କରିବାକୁ ମୋତେ ଲାଜ ଲାଗେ । ମୁଁ ମା'ଙ୍କୁ କହିଲି ଯଦି ମୁଁ ମନେ ମନେ ଆପଣଙ୍କ ବିଷୟରେ ଭାବେ ତେବେ ଆପଣ ଜାଣି ପାରିବେ କି ? "ହଁ ପାରିବି" । ମୁଁ ମା'ଙ୍କୁ କହିଲି ଆପଣ ଆଗରୁ ବୁଝିପାରନ୍ତି କି ଯେ ଅମୁକ ଆପଣଙ୍କର ଶିଷ୍ୟ ହୋଇ ପାରେ । ସେତେବେଳେ ମୁଁ ମା'ଙ୍କୁ ପଚାରିଲି ଯେତେବେଳେ ମା ମୋତେ ପ୍ରଥମ ଦେଖିଲେ ସେ ଦିନ କି ବୁଝି ପାରିଥିଲେ କି ମୁଁ ଆପଣଙ୍କର ଶିଷ୍ୟ ହେବ । ସେ କହିଲେ, ହଁ, ମୁଁ ବୁଝିପାରିଥିଲି । ମା'ଙ୍କ ସହିତ ଆହୁରି ଅନେକ ଆଳାପ ହେଲା । ଯିବା ସମୟରେ ମା'ଙ୍କୁ ପ୍ରଣାମ କରି ୫ ଟଙ୍କା ଦେଲି । ବସ୍‌ରେ ମୁଁ ଆସିଲା ବେଳେ ନାମ ଜପ କରି କରି ଆସୁଥିଲି ।

ସନ୍ଧ୍ୟା ପରେ ନନ୍ଦଲାଲ ସହିତ ଯମୁନା ପାଖକୁ ଗଲି । କିନ୍ତୁ ପାଇନି । ଆସିବା ସମୟରେ ନନ୍ଦଲାଲ ମୋତେ ଭୂତର ଗଳ୍ପ କହିଲା । ରାତିରେ କିଛି ସମୟ "ରାମକୃଷ୍ଣ ଦେବର ଉପଦେଶାବଳୀ" ପଢିଲି । ସାଢ଼େ ଆଠଟାରେ ଶୋଇ ପଡ଼ିଲି ।

॥ ୧୧.୧୨.୬୯ : ଗୁରୁବାର ॥

ଆମ ଡ୍ରାଇଭର ହରିର ଡାକରେ ନିଦ ଭାଙ୍ଗିଲା । ସେ 'ନିଆଁ ଲାଗିଛି' 'ନିଆଁ ଲାଗିଛି' ବୋଲି ପାଟି କରିବାକୁ ଲାଗିଲା । ମୁଁ ଭାବିଲି ବୋଧହୁଏ ଆମ ହୋଟ ଗୋଦାମରେ ଲାଗିଛି । ମୁଁ ସାଙ୍ଗେ ସାଙ୍ଗେ ଉଠି ପଡ଼ିଲି ଏବଂ ମୋ ଭାଇମାନଙ୍କୁ ଉଠାଇଦେଲି । ସେତେବେଳକୁ ୪ଟା ଘଣ୍ଟେ ହେବ । ନନ୍ଦଲାଲର ଦୋକାନର ଆଗ ଦୋକାନରେ ନିଆଁ ଲାଗିଥିଲା । (ମହେଶ ଡାକ୍ତରର ଦୋକାନ) ।

ସକାଳ ୫ଟାରେ କିଛି ସମୟ ନାମ ଜପ କଲି । ୯ଟାରେ ଯେଉଁଠି ଘର ଜଳୁଥିଲା ସେଠାକୁ ଗଲି । ନନ୍ଦଲାଲ, ହୀରାଲାଲ, ମୋହନଲାଲ ଆଉ କମଲ ସହିତ ଦେଖା ହେଲା । ସମସ୍ତେ କୁହା କୁହି ହେଉଥିଲେ "ମୁଁ ୩ଟା ବେଳେ ଆସିଥିଲି, ମୁଁ ୪ଟା ବେଳେ ଆସିଥିଲି" । କିନ୍ତୁ ସାହାଯ୍ୟ କେହି କରିନାହାନ୍ତି । ମୁଁ ମଧ୍ୟ ଯାଇଥିଲି କିନ୍ତୁ ଖାଲି ଦେଖିବାକୁ । ଆଜି ବ୍ୟାଡ଼ମିଣ୍ଟନ ଖେଳିଲି । ଅନୁପ, ଜଗଦ୍ଦୀପେନ୍ଦ୍ର ଏବଂ ପ୍ରଣବ ଇତ୍ୟାଦି ଥିଲେ ।

ସନ୍ଧ୍ୟା ଟ୍ରେନ୍‌ରେ ଧୁବୁରି ଗଲି ମଙ୍ଗଲର ବାହାଘରରେ । ଆମ ସହିତ ଆମର

କାକା ବାସୁଦେବ ଗଲେ । ହରେକୃଷ୍ଣ ଅଉ ଛୁଟିର ଆଗରୁ ଚାଲିଯାଇଥିଲେ । ଧୁବୁଡ଼ିରେ 'ନାଟ୍ୟ କମ୍ପାନି' ଚାଲିଥିଲା । ଆଜି ଥିଲା 'ରାମକୃଷ୍ଣ ଶାରଦାମଣୀ' ଦେଖିଲି । ଖୁବ୍ ଭଲ ଲାଗିଲା । ମୋର କାକାପୁଅ ଭାଇ ସୁଶୀଲ ଆଉ କମଲ ମୋ ସହିତ ଥିଲେ । ରାତିରେ ବୁଧରମଲ୍ଲ କାକାଙ୍କ ପାଖରେ ରହିଲି ।

॥ ୧୨.୧୨.୭୯ : ଶୁକ୍ରବାର ॥

ଆଜି ୫।୩୦ରେ ନିଦରୁ ଉଠିଲି । ବରଯାତ୍ରୀ ଗଲେ ୮ଟା ବେଳେ ନଲବାରୀକୁ । ରାସ୍ତାରେ ଆଖି ବନ୍ଦ କରି ନାମ ଜପ କରି କରି ଯାଇଥିଲି ।

୨ଟା ବେଳେ ନଲବାରୀରେ ପହଞ୍ଚିଗଲୁ । ଅପରାହ୍ଣରେ ଟାଉନ୍‌ରେ ବୁଲା ବୁଲି କଲି ହରେକୃଷ୍ଣଙ୍କର ପୁଅ ନଟବର ସହିତ । ରାତିରେ ଦ୍ୱିତୀୟ ସୋ ସିନେମା ଦେଖିଲି । 'ଗାଇଡ୍' ମୋର ଆଗରୁ ଦେଖା ହୋଇଥିଲା । ପୁଣି ଦେଖିଲି । ରାତି ୨ଟାରେ ଖିଆପିଆ ହେଲା । ଖାଇ ଶୋଇପଡ଼ିଲି ।

॥ ୧୩.୧୨.୭୯ : ଶନିବାର ॥

ସାଢ଼େ ୫ଟାରେ ଉଠିଲି । ଆଜି ମୋ ଦାଦାର ଘରକୁ ଯିବାର ଥିଲା କିନ୍ତୁ ଯାଇ ପାରିଲି ନାହିଁ । ୧୦ଟା ବେଳେ ଆମମାନଙ୍କୁ ବିଦାୟ ଦିଆଗଲା । ରାସ୍ତାରେ ଗୋଟିଏ ଯାଗାରେ ଖିଆପିଆର ବନ୍ଦୋବସ୍ତ ହେଲା । ସନ୍ଧ୍ୟା ୭ଟାରେ ଧୁବୁଡ଼ିରେ ପହଞ୍ଚିଲି । କାକା ବୁଧରମଲ୍ଲର ଘରେ ଖାଇପିଇ ଶୋଇଲି ।

॥ ୧୪.୧୨.୭୯ : ରବିବାର ॥

୬ଟା ବେଳେ ବାସୁଦେବ କାକା ଉଠେଇ ଦେଲେ । ସକାଳ ଟ୍ରେନରେ ଗୋଲକଗଞ୍ଜ ଆସିଲି ।

ପ୍ରଣବ ସହିତ ବସିର ମିଆଁ ପାଖକୁ ଗଲି ଫୁଲଗଛ ପାଇଁ । କିନ୍ତୁ ବସିର ନ ଥିଲା । ଖରାବେଳେ କିଛି ସମୟ 'ଯଶୋଡ଼ା' ପତ୍ରିକା ପଢ଼ିଲି, କିଛି ସମୟ ଶୋଇଲି । ଅପରାହ୍ଣରେ ପ୍ରଣବ ସହିତ କରଦା,ଙ୍କ ପାଖକୁ ଗଲି । ଅନେକ ଆଲାପ ଆଲୋଚନା କଲି । କରଦା,ଙ୍କ ପାଖରୁ ସୁଗନ୍ଧରାଜ, କଲାପାଡ ଫୁଲ (ରାତି) ଆଦି କେତେ ପ୍ରକାରର ଗଛ ଆଣିଲି । ଆଜି ବ୍ୟାଡ୍‌ମିଣ୍ଟନ ଖେଳ ହୋଇନି । ସନ୍ଧ୍ୟାରେ ଗୋବିନ୍ଦ ଆସିଲା । କିଛି ସମୟ ଗୋବିନ୍ଦ ଥିଲା । କିଛି ସମୟ ପରେ ସେ ଧୁବୁଡ଼ି ବସ୍‌ରେ ଚାଲିଗଲା ।

ରାତିରେ ମୁଁ, ମୋର ଛୋଟ ଭାଇ ନଟବର ଆଉ ଅଶୋକ ଜାଆଁ ପୁଇଁ ଉଠିଲୁ । ଆଉ ମୋ ମା ମଧ୍ୟ ବସିଥିଲା । ମୁଁ ଅଗଣାକୁ ବାରମ୍ବାର ଛେପ ପକାଉଥିଲି, ଆଉ ମୋ

ନାକକୁ ବାରମ୍ବାର ଘଷୁଥିଲି । ସେତେବେଳେ ମୋ ମା କହିଲା, "ତୁ ଏସବୁ କ ଖରାପ ଅଭ୍ୟାସ କରୁଛୁ । ତୋର ବାପଘର କଥା ଶୁଣୁଛୁ ।" ମୁଁ ହସିଲି ଏବଂ କହିଲି, ମୁଁ ବାହା ହେବିନି । ମୁଁ ସଂସାରରେ ବାନ୍ଧ ହେବାକୁ ଭୟ କରେ । କେଜାଣି ବାହାଘର ପରେ ମୋ ମା (କାଳୀ)ଙ୍କୁ ଭୁଲି ଯାଇପାରେ ।"

ଏମିତି ଦିନ ହେଲା ମୋର କାମପୂର୍ଣ୍ଣ ଭାବ ପ୍ରାପ୍ତ ନାହିଁ । ଭକ୍ତି ବଢୁଛି । ଅହଂକାର କିଛି କମିଛି । କିନ୍ତୁ ଅହଂକାର ଖୁବ୍ ବେଶୀ କମିନି । କମେଇବାର ଚେଷ୍ଟା କରୁଛି । କଲେଜରେ ପଢ଼ାପଢି ହେଉନାହିଁ । କାଲିଠାରୁ କଲେଜରେ ପଢ଼ାପଢି ଆରମ୍ଭ କରିବି । ଆଉ ଡେରି କଲେ ଚଳିବ ନାହିଁ ।

ମୋର ନାକ ଘଷା ଆଜିଠାରୁ ବନ୍ଦ କଲି । ଏଇ ଅଭ୍ୟାସଟି ମୋର କିଛି ମାସ ହେଲା ଆରମ୍ଭ ହୋଇଛି । ଏଇ ଅଭ୍ୟାସ ପାଇଁ ମା ମୋତେ ଘଣ୍ଟାଏ ଆଗରୁ ଖୁବ୍ ଗାଳି ଦେଇଛି । କାମପୂର୍ଣ୍ଣ ଚିନ୍ତା ନକରିବା ସତ୍ତ୍ୱେ ଆଜି ମୋର ସ୍ୱପ୍ନଦୋଷ ହେଲା ।

॥ ୧୫.୧୨.୭୯ : ସୋମବାର ॥

ଆଜି ବିଶେଷ କିଛି ଘଟିନି । ଉଠୁ ଉଠୁ ଅନେକ ଡେରି ହେଲା । ଆଜିଠାରୁ ଆମ କଲେଜର "କଲେଜ ୱିକ୍" ଆରମ୍ଭ । ସେଥିପାଇଁ ଆଜି କଲେଜ ଯାଇନି । ସକାଳେ ହୀରାଲାଲକୁ ଦେଖି ମନରେ କାମଭାବନା ଉଠିଲା । ପ୍ରଣବ ସକାଳେ ଆସିଲା । ପ୍ରଣବ ସହିତ ବଗିଚା ପାଖକୁ ଗଲି ଫୁଲ ଗଛ ପାଇଁ ।

ଅପରାହ୍ଣରେ ବ୍ୟାଡ୍‌ମିଣ୍ଟନ ଖେଳିଲି । ରାତିରେ ଭୁବନ ଚନ୍ଦ୍ର ପ୍ରଧାନ ଆଉ ବେସିକ୍ ଟ୍ରେନିଂ କଲେଜର ପ୍ରିନ୍‌ସିପାଲ ଆମ ଘରକୁ ଆସିଲେ 'ଗୀତା ଜୟନ୍ତୀ' ପାଇଁ ଚାନ୍ଦା ନେବାକୁ । ଭୁବନ ପ୍ରଧାନ ମୋତେ କହିଲେ, "ତୁମକୁ ଗୀତା ଜୟନ୍ତୀରେ ଭାଷଣ ଦେବାକୁ ହେବ ।"

ଖରାବେଳ ପରେ ମୋର କାମପୂର୍ଣ୍ଣ ଚିନ୍ତା ନାହିଁ । ସ୍ୱପ୍ନଦୋଷ ହୋଇଛି ।

॥୧୭.୧୨.୭୯ : ମଙ୍ଗଳବାର ॥

ସବୁଦିନ ପରି ଠିକ୍ ସମୟରେ ଉଠିଲି । ଆଜି ମୁଁ କଲେଜ ଯାଇନି । କାରଣ ମୁଁ ଜାଣେନା । ଖରାବେଳେ କାରଖାନାକୁ ଗଲି । ମୁଁ ଆମ କାରଖାନାକୁ ଖୁବ୍ କମ୍ ଯାଏ । କାରଣ କାରଖାନାର ଖଟ୍ ଖଟ୍ ଶବ୍ଦ ଭଲ ଲାଗେନି ।

ସକାଳେ ହୀରାଲାଲ ସହିତ ଦେଖା ହେଲା । ମନରେ କାମଭାବ ଉଠିଲା । ଅପରାହ୍ଣରେ ଆମେ ବ୍ୟାଡ୍‌ମିଣ୍ଟନ ଖେଳିଲୁ । ପ୍ରଥମ ଗେମ୍‌ରେ ମୁଁ ଆଉ କମଳ ଗୋଟିଏ ପଟରେ, ମିର୍ଜାମଲ ଆଉ ହୀରାଲାଲ ଅନ୍ୟ ପଟରେ । ପ୍ରଥମ ଗେମ୍‌ଟି ଆମେ ଜିତିଲୁ ।

ତା' ପରଚ୍ଛା ସେମାନେ କାଢ଼ିଲେ । ତାପରେ ମୋର ଆଉ ମିର୍ଜା ଭିତରେ ପ୍ରତିଯୋଗିତା ହେଲା । ମୁଁ ହାରିଲି । ରଞ୍ଜିତ ଦାଉ ପାଖରୁ କେତେ ପ୍ରକାରର ଗଛ ଆଣିଲି । ରାତିରେ ନନ୍ଦଲାଲ ସହିତ ଦେଖା ହେଲା । ନନ୍ଦଲାଲ ଆଶ୍ରମକୁ ଯାଇଥିଲା । ଆଶ୍ରମ ଖବର ବିଷୟରେ ପଚାରିଲି ।

|| ୧୬.୧୨.୬୯ : ବୁଧବାର ||

ଆଜି କଲେଜକୁ ଗଲି । କଲେଜରୁ ଗୋବିନ୍ଦ ପାଖକୁ ଗଲି । ବାବୁରାମ ଆଉ ଗୋବିନ୍ଦ ଦୁଇଜଣ ଥିଲେ ସେଠାରେ । ସେଠାରୁ ମୁଁ ବାବୁରାମ ସାଇକେଲ ନେଇ ଯୋଗମାୟା ଆଶ୍ରମକୁ ଗଲି । ମା'ଙ୍କ ସହିତ ଦେଖା ହେଲା । ମା ରବିବାରରେ ଆସିବାକୁ ରାଜି ହୋଇଗଲେ । କିଛି ସମୟ ପରେ ସେଠାକୁ ଗୋପାଳ ଭଞ୍ଜ ଆସିଲା ।

ଆଶ୍ରମରୁ ଆସି ଜିଲ୍ଲା ପାଠାଗାରକୁ ଗଲି । ମୋର 'ପ୍ରେମିକ ଗୁରୁ' ବହିଟି ଫେରାଇ ସ୍ୱାମୀ ପ୍ରଣବାନନ୍ଦ ବ୍ରହ୍ମଚାରୀଙ୍କ ଜୀବନୀ ନେଇ ଆସିଲି । ଗୋବିନ୍ଦ ପାଖରେ ଆମର ଖୁବ୍ ଅଡ୍ଡା ହେଲା । ନନ୍ଦଲାଲ ଆଉ ବୃନ୍ଦନ୍ ଆସିଲେ । ଗୋପାଳ ଭଞ୍ଜ, ବାବୁରାମ, ବାଦଲ ଆଉ ରଞ୍ଜିତ ଆସିଲା । ଟ୍ରେନ୍‌ରେ ଫେରି ଆସିଲି ।

|| ୧୮.୧୨.୬୯ : ଗୁରୁବାର ||

ସକାଳେ ବ୍ରାହ୍ମମୁହୂର୍ତ୍ତର ସମୟରେ ଉଠିଲି । ଉଠି ନାମ ଜପ କଲି । ସକାଳେ ନନ୍ଦଲାଲ ଆସିଲା । ବାବୁରାମକୁ ତାର ଦୁଇଖଣ୍ଡ ବହି ଦେଇଆସିଲି । ୧- 'ଭକ୍ତେର ଜୟ', ୨- 'ପୃଥିବୀର ଶ୍ରେଷ୍ଠ ଦମ୍ପତି କଜନ'। ଖାଇବେଲେ କାରଖାନାକୁ ଗଲି । ଶୋଇ ଶୋଇ କାରଖାନାରେ ପ୍ରଣବାନନ୍ଦର ଜୀବନୀ ପଢ଼ିଲି ।

ବ୍ୟାଡ୍‌ମିଣ୍ଟନ ଖେଳ ହେଲା । ଆଜି ରଞ୍ଜିତ ଦାଉ କ୍ରିକେଟ ଖେଳିବାର ପ୍ରଶ୍ନ ଉଠେଇଲା । ଆମେ ରାଜି ହେଲୁ । ସନ୍ଧ୍ୟାପରେ ଗୋବିନ୍ଦ ଆସିଲା । ତା ସହିତ ଆଧ୍ୟାତ୍ମିକ ଆଲୋଚନା କଲି । ଆଜି ମୁଁ କାହାର ମନରେ ଦୁଃଖ ଦେଇନି । ଭକ୍ତିଭାବ ଖୁବ୍ ବେଶୀ ନାହିଁ । କାମଭାବ ବେଶୀ ନାହିଁ । ଆଜି ସାରା ଦିନ ଗୋଟିଏ ପରେ ଆଉ ଗୋଟିଏ କାମରେ ବ୍ୟସ୍ତଥିଲି ବୋଲି ମୋ ମନରେ କୁଚିନ୍ତା ଆସିନି ।

ମୁଁ ସ୍ୱାମୀ ପ୍ରଣବାନନ୍ଦଙ୍କ ଜୀବନୀରେ ପଢ଼ିବାକୁ ପାଇଛି ଯେ ସେ ମନରେ ବୈରାଗ୍ୟ ଆଣିବା ପାଇଁ ନିଜର ଜଣାଶୁଣା ମୃତ ମଣିଷ ମାନଙ୍କର ଲିଷ୍ଟ ରଖିଥିଲେ । ମୁଁ ମଧ୍ୟ ମୋ ପଢ଼ା ଯାଗାରେ କେତେଗୁଡ଼ିଏ ମୃତ ମଣିଷ ମାନଙ୍କର ନାମ ଝୁଲାଇ ରଖିଦେଲି ।

ମୁଁ ରାତିରେ ସ୍ୱପ୍ନରେ ଯୋଗମାୟା ଦେବୀଙ୍କୁ ଉଷା ଭିତରେ ଦେଖିଲି ।

|| ୧୯.୧୨.୬୯ : ଶୁକ୍ରବାର ||

ସକାଳେ ଉଠୁ ଉଠୁ ଡେରି ହେଲା । ଡାଇରି ଲେଖିବାରେ ଓ ନାମଜପ କରୁ କରୁ

ନଅଟା ବାଜି ଯାଇଛି । ତାପରେ ମୁଁ ବାଲ କାଟିବାକୁ ଗଲି ।

ସକାଳେ ହୀରାଲାଲର ଘରକୁ ଗଲି । ତାକୁ ଦେଖି ମନରେ କାମଭାବ ଉଦୟ ହେଲା । ତାକୁ ମୁଁ କହିଲି ଚାଲ, କାଲି ଧୁବୁରୀ ଯିବା । ଡ୍ରାମା, ଫଙ୍କସନ୍ ଦେଖି ରାତିରେ ସେଠାରେ ରହି ସକାଳେ ଚାଲି ଆସିବା । ମୁଁ ଭାବିଲି ରାତିରେ ସେଠାରେ ରହିଲେ ହୀରାଲାଲ ସହିତ କରିଯାବ । ହୀରାଲାଲ ରାଜି ହେଲା । ଖରାବେଳେ କାରଖାନାକୁ ଗଲି ।

୩ଟା ବେଳେ ବ୍ୟାଡ୍‌ମିଣ୍ଟନ ଖେଳିବାକୁ ଗଲି । ଆଜି କଥା କମ୍ କହିବାକୁ ଓ ହସାହସି କମ୍ କରିବାକୁ ମୁଁ ଖୁବ୍ ଭଲ ଖେଳିଛି । ଖେଳପରେ ପ୍ରଣବ ସହିତ କିଛି ସମୟ ବୁଲାବୁଲି ହେଲା । ତାପରେ ୬ଟା ବେଳେ ଘରକୁ ଆସିଲି । ଖାଇ ପିଇ ସାରି, ଆଜି ଯେ ଗୀତା ଜୟନ୍ତୀ, ଏଇ କଥା ମନେ ପଡ଼ିଲା । ମୁଁ ଯିବାର କିଛି ସମୟ ପରେ ସଭା ଭାଙ୍ଗିଲା । ମୁଁ ବେଶୀ କିଛି ଶୁଣି ପାରିଲି ନାହିଁ ।

ଏଇମିତି ବୁଲା ବୁଲି ଭିତରେ ଦିନଟି ଚାଲିଗଲା । ବିଶେଷ କିଛି କରିପାରିଲି ନାହିଁ । କ୍ଲାସର କିଛି ପଢାପଢି କଲି ନାହିଁ । ଦିନଟି ଏମିତି ବାଜେ ଭାବରେ ଗଲା । ପ୍ରଣବ ବର୍ତ୍ତମାନ ମୋତେ ଉଚ୍ଚଚିନ୍ତାରୁ ମୋତେ ନିରୁତ୍ସାହିତ କରେ । ପ୍ରଣବ ବର୍ତ୍ତମାନ ନାସ୍ତିକ ଭାବାପୂର୍ଣ୍ଣ ହୋଇଯାଇଛି । ସେଥିପାଇଁ ପ୍ରଣବ ଠାରୁ ଅଳ୍ପ ଦୂରରେ ରହିବାକୁ ପଡ଼ିବ । କାରଣ ପ୍ରଣବ ସହିତ ରହିଲେ ମୋର ଧର୍ମ ପ୍ରତି ଆସ୍ଥା କିଛି କମିଯାଏ ।

ଆଜି ମନରେ କାମଚିନ୍ତା ଅଛି । ରାତିରେ ସ୍ୱପ୍ନଦୋଷ ହେଲା ।

|| ୨୦.୧୨.୭୯ : ଶନିବାର ||

ଆଜି ଉଠିବା ସମୟରୁ ମୋ ମନରେ କାମପୂର୍ଣ୍ଣ ଚିନ୍ତା । ଆଜି ହୀରାଲାଲ ସହିତ ଗୋଟିଏ ରେଜେଇ ତଳେ ଶୋଇ ପାରିବି । ରାତିରେ ଚପା ଚପି ହୋଇ, କୁଣ୍ଢା କୁଣ୍ଢି ହୋଇ ଶୋଇ ପାରିବି । ହୀରାଲାଲ ସହିତ ସବୁ କରିପାରିବି । ଏସବୁ ଚିନ୍ତା ମନରେ ବାରମ୍ବାର ଆସୁଛି । ଆଉ ଗୋଟିଏ ଦିଗରୁ ଆଧ୍ୟାତ୍ମିକ ଚିନ୍ତା ଆସି ଏସବୁକୁ ଆକ୍ରମଣ ଉପରେ ଆକ୍ରମଣ କରୁଛି । ଆକ୍ରମଣ ଫଳରେ ଦୁଇପକ୍ଷ କ୍ଷତ ବିକ୍ଷତ ହେଉଛନ୍ତି । ଏମିତି ମୋ ମନରେ ତୁମୁଳ ଯୁଦ୍ଧ ଚାଲିଛି ।

ନାମଜପ କରିବା ପରେ ଖରାପ ଚିନ୍ତା କିଛି କମିଛି । କିନ୍ତୁ ପୂର୍ଣ୍ଣ ଭାବରେ କମି ନାହିଁ । ଏଇ ବିପଦରୁ ମୋତେ ଉଦ୍ଧାର କରିବା ପାଇଁ ମୁଁ ମଝିରେ ମଝିରେ ମା'ଙ୍କୁ ଡାକୁଛି । ମୁଁ ଧୁବୁରୀ ଯିବାକୁ ପ୍ରସ୍ତୁତ ହୋଇଗଲି । ମା' (କାଳୀ) ମୋର ପ୍ରାର୍ଥନା ଶୁଣିଲେ । ତାର କାରଣ ହଠାତ୍ ହୀରାଲାଲ ଧୁବୁରୀ ଯିବାର ମତଲବ ପୁରା ପରିତ୍ୟାଗ କଲା । ମୁଁ ମଧ୍ୟ ଆଉ କୁ-କାର୍ଯ୍ୟ କରିପାରିଲି ନାହିଁ ।

ଖରାବେଳେ ମୋର କାମ-ଉତ୍ତେଜନା ଖୁବ୍ ହେଲା । ମୁଁ ହସ୍ତମୈଥୁନ କରି କାର୍ଯ୍ୟ

ବାହାର କଲି; ଆଉ ଖାଇଦେଲି । ସର୍ଦ୍ଦି ବାହାର କରିବାକୁ ଯାଉଛି ଏଠକ୍ଷ ବେଳେ ମୋର କାଳୀଙ୍କ କ୍ୟାଲେଣ୍ଡରଟି ପଡ଼ିଗଲା । ଏଇଟାର ଯେ କୌଣସି କାରଣ ହୋଇପାରେ ।

ଆଜି ପ୍ରଥମ ଟେବୁଲ ଟେନିସ୍ ଖେଳିଲି । ସନ୍ଧ୍ୟାରେ ବ୍ୟାଡ୍‌ମିଣ୍ଟନ ଖେଳିଲି । ଆଜି ମୁଁ ଖୁବ୍ ଭଲ ଖେଳିଛି, କଥା କମ୍ କହିବାରୁ । କିନ୍ତୁ ସର୍ଦ୍ଦି ବାହାର କରିଥିବାରୁ ଦେହ ଅଳ୍ପ ଦୁର୍ବଳ ଲାଗୁଛି ।

॥୨୧.୧୨.୭୯ : ରବିବାର ॥

ଆଜି ରବିବାର । ଆଜି ୭।୩୦ରେ ଯୋଗମାୟା ଦେବୀଙ୍କୁ ଆଣିବାକୁ ଧୁବୁରି ଗଲି । ଯୋଗମାୟା ଦେବୀଙ୍କ ସହିତ ମୁଁ ୧୦।୩୦ରେ ବସ୍‌ରେ ଉଠିଲି । ବସ୍‌ରେ ବସି ଅନେକ ଗଳ୍ପ କଲି । ସେସବୁ ଜନ୍ମରେ ଲେଖାହୋଇଛି ।

ମୁଁ ଯୋଗମାୟା ଦେବୀଙ୍କୁ ପ୍ରଶ୍ନ କଲି, ଆଉ କେତେଦିନ ପରେ ମା କାଳୀଙ୍କୁ ଦର୍ଶନ କରିବି । ଗୁରୁମା' କହିଲେ ୪ ମାସ ମଧ୍ୟରେ ଦେଖାଦେବେ । ତା ଆଗରୁ ମଧ୍ୟ ଦେଖା ଦେଇ ପାରନ୍ତି । ମୁଁ ପଚାରିଲି, ବର୍ତ୍ତମାନ ମୋର ନାମ ଜପ କେମିତି ଚାଲିଛି । ମା କହିଲେ ଖୁବ୍ ଭଲ ଚାଲିଛି । ମା କହିଲେ ଯେ ତୁମକୁ ଦେଖାଦେବା ପୂର୍ବଦିନ ମା କାଳୀ ତାଙ୍କୁ କହିବେ ଯେ କାଲି ସେ ଅମୁକକୁ ଦେଖାଦେବେ । ମା କହିଲେ ଯେ ଅଳ୍ପ ଡେରି ହେବାଟା ଭଲ । ମା'ଙ୍କୁ ପ୍ରଶ୍ନ କରିବାରୁ ସେ କହିଲେ ଯେ ତାଙ୍କ ଶିଷ୍ୟ ମାନଙ୍କ ଭିତରୁ କେହି ସାକ୍ଷାତ ଦର୍ଶନ କରିନାହିଁ । ନିତାଇ ଦା ପ୍ରାୟ ଦେଖା ପାଇବାର ଭଳି ହୋଇଛି ।

ଗୋଲକଗଞ୍ଜକୁ ମା' ଯୋଗମାୟା ଦେବୀଙ୍କୁ ନେଇ ଆସିଲି । ଆମ ଘରେ ମା ଖାଇଲେ । ସମସ୍ତେ ହାତ ଦେଖାଇଲେ । ସମସ୍ତଙ୍କୁ ଭଲ ବୋଲି କହିଲେ । ଯୁଗଲ ଦାଙ୍କୁ କହିଲେ ଦୁଇ ବର୍ଷ ପରେ ଭଲ ପଇସା ପାଇବ । ଅଶୋକକୁ ଖୁବ୍ ଭଲ କହିଲେ । ଖୁବ୍ ବିଦ୍ୟା, ଧନ ଅଛି ବୋଲି କହିଲେ । ଦିଲ୍ଲୀପ ଆଉ ନଟବରକୁ ମଧ୍ୟ ଭଲ କହିଲେ ।

ସାଓର ମଲ୍ଲ (ଦାଦା)ଙ୍କର ହାତ ଦେଖିଲେ । କହିଲେ ଯେ କେହିଜଣେ ରୋଗ ଲଗେଇ ଦେଇଛି । ମଙ୍ଗଳବାରରେ ତାବିଜ ଆଉ ଲଗାଇବାକୁ ତେଲ ଦେବାକୁ କହିଲେ । କହିଲେ ଯେ ଠିକ୍ ହୋଇଯିବ । ତାପରେ ବାବୁରାମ ନେଇଗଲା । ଗୋପାଳ ଆମ ଘରକୁ ଆସିଥିଲା ଗୁରୁମା'ଙ୍କୁ ଦେଖିବା ପାଇଁ । ଆମ ଜମି ବାଡ଼ିରେ, ମାଟିରେ କୌଣସି ଦୋଷ ଅଛି ବୋଲି କହିଲେ ନାହିଁ ।

ବାବୁରାମ ଘରୁ ନନ୍ଦଲାଲ ତାଙ୍କୁ ନେଇଗଲା । ନନ୍ଦଲାଲର ଜମିରେ ଅଳ୍ପ ଦୋଷ

ଅଛି ବୋଲି କହିଲେ । ଆଉ ବାବୁରାମ ଜମିରେ ମଧ୍ୟ ଦୋଷ ଅଛି ବୋଲି କହିଲେ ।

ନନ୍ଦଲାଲର ଘରୁ ମା'ଙ୍କୁ ନେଇଗଲି ଅରୁଣା ଦା' ଘରକୁ । ଏଇମିତି ହେଉ ହେଉ ୩।୩୦ ବାଜିଲା । ଆଉ ୫ଟା ବେଳେ ଆଶ୍ରମରେ ମିଟିଂ ଥିଲା । ୪ଟା ବସ୍‌ରେ ମା' ଚାଲିଗଲେ । ଆଜି ସାରା ଦିନଟି ଖୁବ୍ ଖୁସିବାସିରେ ଚାଲିଗଲା । ଧ୍ୟାନ କରିବାର ସମୟରେ ଶରୀରଟା ଭାରି ଭାରି ଲାଗେ । ଏହାର କାରଣ ପଚାରିବାରୁ ମା' କହିଲେ ଯେ ସେଇ ସମୟରେ ମା କାଳୀର ଆକର୍ଷଣ ଲାଗେ, ସେଥିପାଇଁ ଲାଗେ ଯେ କେହି ଜଣେ ଶରୀର ଉପରେ ବସିଛି ।

ସନ୍ଧ୍ୟାରେ ବ୍ୟାଡ୍‌ମିଣ୍ଟନ ଖେଳିଲି । ତାʼପରେ ଗୋବିନ୍ଦର ଘରକୁ ଗଲି । ଗୋପାଳ ଚଉରାସି ଦୋକାନକୁ ଗଲି । ଗୋପାଳ ଚଉରାସି ମୋତେ ଚା' ଖୁଆଇଲେ, ମୁଁ ଖାଇଲି । ୭।୩୦ରେ ଖାଇ ପିଇ ଗୋବିନ୍ଦ ଦୋକାନକୁ ଗଲି । କଥାବାର୍ତ୍ତା ହେଲା । ଗୋବିନ୍ଦ, ଗୋପାଳ ଆଉ ନନ୍ଦଲାଲ କିଛି ସମୟ ପରେ ଆସିଲେ । ରାତି ୮ଟାରେ ଶୋଇ ପଡ଼ିଲି ।

ରାତିରେ ସ୍ୱପ୍ନଦୋଷ ହୋଇଛି, ଏବଂ ସାମ୍ପ୍ରଦାୟିକ ଦଙ୍ଗାର ସ୍ୱପ୍ନ ଦେଖିଲି । ଦଙ୍ଗା ହୋଇଥିଲା ଧନୀ ଆଉ ଗରିବ ମଧ୍ୟରେ । କିନ୍ତୁ ଆକ୍ରମଣକାରୀମାନେ ମାରଉଆଡ଼ି ମାନଙ୍କୁ କେବଳ ମାରିବା ଆରମ୍ଭ କରି ଦେଇଥିଲେ । ମୋ ବାପା ମଧ୍ୟ ମାଡ଼ ଖାଇଥିଲେ ।

॥ ୨୨.୧୨.୭୯ : ସୋମବାର ॥

ଆଜି ବିଶେଷ କିଛି ଘଟିନି । କାଳିର ସମୟରେ ବିଛଣାରୁ ଉଠିଲି । କଲେଜକୁ ଗଲି । ବସ୍‌ରେ ମୁଁ ନାମଜପ କଲି, ଆନନ୍ଦର ଲହରୀ ଉଠିଲା । ଅପରାହ୍ନରେ ବ୍ୟାଡ୍‌ମିଣ୍ଟନ ଖେଳିଲି । ଟେବୁଲ ଟେନିସ କିଛି ସମୟ ଖେଳିଲି । ଟେବୁଲ ଟେନିସ୍ ଖେଳ ଆଜି କିଛି କିଛି ଶିଖିଲି । କିନ୍ତୁ ବର୍ତ୍ତମାନ ମୁଁ ଭଲ ଭାବେ ଖେଳି ପାରେନି ।

ଆଜି କାମଭାବ କିଛି କମ୍ । ମୁଁ ବର୍ତ୍ତମାନ ହୀରାଲାଲକୁ ଭଲପାଏ, କିନ୍ତୁ ସେ ପୁଣି ମୋ ପାଖରୁ ଦୂରରେ ରହେ । ମା' (କାଳୀ)ଙ୍କୁ ବୁଝିବା ବଡ଼ କଠିଣ ଅଟେ । କଲେଜର ପଢ଼ାପଢ଼ି ବର୍ତ୍ତମାନ ମୁଁ ଆରମ୍ଭ କରିନାହିଁ ।

ରାତିରେ ହୀରାଲାଲ ସହିତ କାମପୂର୍ଣ୍ଣ ସ୍ୱପ୍ନ ଦେଖିଲି ।

॥ ୨୩.୧୨.୭୯ : ମଙ୍ଗଳବାର ॥

ଆଜି ବି କଲେଜରେ କ୍ଲାସ ହୋଇନି । ମୁଁ ହୀରାଲାଲକୁ ଭଲ ପାଏ ଆଉ ତାର ବ୍ୟବହାର ପାଇଁ ତାକୁ ଘୃଣା କରେ । ଆକର୍ଷିତ ହୁଏ । ପୁଣି ତାଠାରୁ ଦୂରରେ ରହିବାକୁ ଚାହେଁ ।

ଆଜି ସ୍ୱାମୀ ନାରାୟଣ ସହିତ ଦେଖାହେଲା । ମୋର ଡାଏରୀର କିଛି ପୃଷ୍ଠା ତାଙ୍କୁ ଦେଖାଇଲି । ଆଉ ତା ସହିତ ଆଧ୍ୟାତ୍ମିକ ଆଲୋଚନା କଲି । ଆଜି ମା (କାଳୀ)ଙ୍କୁ ଭଲ ଭାବରେ ଡାକିବା ହୋଇନି । କଲେଜର ପଢ଼ା ପଢ଼ି ତ ହୋଇ ପାରୁନାହିଁ । ବ୍ୟାଡ୍ ମିଣ୍ଟନ, ଟେବୁଲ ଟେନିସ ପ୍ରଭୃତି ଖେଳିଲି । କାହା ସହିତ ଆଜି ବିଶେଷ ଗେମ୍ ବି ଜିତିନି । କେବଳ ବ୍ୟାଡ୍‌ମିଣ୍ଟନରେ ଗୋଟିଏ ଗେମ୍ ଜିତିଥିଲି । ଆଜି ମୋର ସୋମ୍ୟାବସ୍ଥା ଅଛି । ଭକ୍ତି ନାହିଁ କି ଅଭକ୍ତି ନାହିଁ ।

ଆଜି ଯୋଗମାୟା ଦେବୀଙ୍କ ବିଷୟରେ ଗୋଟିଏ କଥା ଶୁଣିଲି । ଦିନେ ଯୋଗମାୟା ଦେବୀଙ୍କ କୌଣସି ଗୋଟିଏ ଯାଗାକୁ ଟ୍ରେନରେ ଯିବାର ଥିଲା । ଯୋଗମାୟା ଯେତେବେଳେ ଗଲେ ସେତେବେଳକୁ ଟ୍ରେନ ଛାଡ଼ିବାର ସମୟ ହୋଇ ଯାଇଥିଲା । ଲୋକମାନେ ମା'ଙ୍କୁ କହିଲେ, ଟ୍ରେନ ବୋଧହୁଏ ଛାଡ଼ି ଦେଇଛି । ସେତେବେଳେ ଯୋଗମାୟା ଦେବୀ କହିଲେ ଯେ, କାହା ବାପାର ଶକ୍ତି ଅଛି ଯେ ମୁଁ ଯିବା ଆଗରୁ ଟ୍ରେନଟି ଚାଲିଯିବ । ମା' ଯାଇ ଟ୍ରେନରେ ଉଠିଲେ । ସଙ୍ଗେ ସଙ୍ଗେ ଟ୍ରେନ ଛାଡ଼ିଦେଲା ।

॥ ୨୪।୧୨।୬୯ : ବୁଧବାର ॥

ପ୍ରତ୍ୟେକ ଦିନର ସମୟରେ ଉଠିଲି । ସକାଳେ ସ୍ୱାମୀ ନାରାୟଣ ସହିତ ଟେବୁଲ ଟେନିସ ଖେଳିଲି । ବର୍ତ୍ତମାନ ମୁଁ ଭଲ ଭାବରେ ଖେଳ ଶିଖିଯାଇଛି ।

୧୨।୫୦ରେ ଯୋଗମାୟା ଦେବୀଙ୍କ ଆଶ୍ରମକୁ ଔଷଧ ଆଣିବାକୁ ଗଲି । ବସରେ ନାମ ଜପ କରି କରି ଯାଇଥିଲି । "ପପୁଲାର ଷ୍ଟୋର"ରେ "ନବଭାରତ ଟାଇମ୍‌ସ" ପାଇଁ ୫ ଟଙ୍କା ଜମା ଦେଲି । ଗୁରୁମା' ଶୋଇଥିଲେ । ନିତାଇ ଦା' ମଧ୍ୟ ଶୋଇଥିଲେ । ମୋର ଶବ୍ଦ ଶୁଣି ଉଠିଲେ । ମା' ଯୋଗମାୟା ଦେବୀ ମୋ ଯିବାର ଘଣ୍ଟାଏ ପରେ ଉଠିଲେ । ଔଷଧ ଶନିବାରେ ଦେବେ ବୋଲି କହିଲେ ।

ମା (ଯୋଗମାୟା ଦେବୀ) ମୋତେ ଇଚ୍ଛା କଥା କହିଲେ । ସାଧୁ, ମନ୍ଦିର ବହି ଦେଖି ମୁଁ ଯୋଗମାୟା ଦେବୀଙ୍କୁ ପଚାରିଲି ଏସବୁ ଦେଇ କ'ଣ ଈଶ୍ୱରଙ୍କୁ ପାଇହୁଏ । ମା' କହିଲେ ନା, ଏସବୁ ଠାରୁ ଭଗବାନ ବହୁତ ଦୂରରେ ରହନ୍ତି । ମୁଁ ମା'ଙ୍କୁ ପ୍ରଣାମ କରି ୪ ଟଙ୍କା ଦେଇ ଆସିଲା ବେଳେ ନନ୍ଦଲାଲ ଆସିଲା । ସେ ମୋତେ ପୁଣି ଆଶ୍ରମକୁ ନେଇଗଲା । ସନ୍ଧ୍ୟା ଟ୍ରେନରେ ଫେରିଲି । ରାତିରେ ଗୋବିନ୍ଦ ଆସିଲା । ଗୋବିନ୍ଦ ସହିତ 'ବ୍ରହ୍ମଚର୍ଯ୍ୟ' ବିଷୟରେ ଆଲୋଚନା କଲି ।

କାଲିର କାମ- ପ୍ରଣବକୁ ଲେନିନ ଦେବା, ମା' (କାଳୀ)ଙ୍କର ଫଟୋ ଆଣିବା, ୮ଟାରେ ଅଭୟ ସାରଙ୍କ ପାଇଁ ଗୁରୁ ବନ୍ଦନା ଲେଖିବା ।

॥ ୨୫।୧।୭୯ : ଗୁରୁବାର ॥

ସାଢ଼େ ସାତଟାରେ ଉଠିଲି । ସକାଳେ ନାମ ଜପ କରି ହେଲନାହିଁ । ସକାଳେ 'ବ୍ରହ୍ମଚର୍ଯ୍ୟମ' ନାଆଁ ର ବହିଟି ଅଳ୍ପ ପଢ଼ିଲି । ସେଇ ବହିରୁ କିଛି କିଛି ଅଂଶ ଲେଖି ରଖିଲି । ଅପରାହ୍ନରେ ଟେବୁଲ ଟେନିସ ଖେଳିଲି । ଆଜି ବ୍ୟାଡ଼ମିଣ୍ଟନ ଖେଳ ହୋଇ ପାରିଲି ନାହିଁ । ଅପରାହ୍ନରେ ମୋର ପଢ଼ା ରୁମ୍‌ରେ ବସି କିଛି ସମୟ ଧ୍ୟାନ କଲି । ମନ୍ତ୍ର ଜପ କଲି । ବାଂଲା ସ୍କୁଲକୁ ମ୍ୟାଜିକ୍ ଦେଖିବାକୁ ଗଲି । ଗୋପାଳ ଆଉ ପ୍ରଣବ ଥିଲେ । ଖେଳଟା ଖୁବ୍ ବାଜେ ହେଲା । ସେଥିପାଇଁ ଆମେ ହୋ'ହାଲ୍ଲା କରିବାକୁ ଆରମ୍ଭ କଲୁ ।

ଆଜି ମୋର କାମଭାବ ପ୍ରାପ୍ତ ନଥିଲା । କାହାରିକି ବିଶେଷ କିଛି ଆଘାତ ଦେଇନି । ଅରୁଣକୁ ବ୍ୟାଗ ପାଇଁ ମନା କରି ଆଘାତ ଦେଲି । ଶୋଇବା ଆଗରୁ ନାମ ଜପ କଲି ।

॥ ୨୬।୧।୭୯ : ଶୁକ୍ରବାର ॥

ବାଜେ ଭାବରେ ସମୟ ନଷ୍ଟ ହେଉଅଛି । ସମ୍ପୂର୍ଣ୍ଣ ଦିନଟି ବାଜେ ଗଳ୍ପ ସଳ୍ପ କରି, ଟେବୁଲ ଟେନିସ ଖେଳି, ଆଡ୍‌ଡ଼ା କରି କଟାଇଲି । ନାମ ଜପ ଖୁବ୍ ବେଶୀ କଲି ନାହିଁ । ଧ୍ୟାନ କରିବା ମଧ୍ୟ ହେଲା ନାହିଁ । କଲେଜର ପଢ଼ାପଢ଼ି ଵି ଆରମ୍ଭ କରିନି । କାହା ମନରେ ଜାଣିଶୁଣି କଷ୍ଟ ଦେଇନି । କାମଭାବ ଆଜି ପ୍ରାପ୍ତ ନଥିଲା ।

ମୋର ବାବା ମୋତେ କହିଲେ, ତୁ କୁଆଡ଼େ ଯୋଗମାୟାର ଗୁନ୍ଦା ତୋଳିବା ପାଇଁ ବୁଲୁଛୁ । ଯୁଗଳ ଦା' ଏକଥା ଶୁଣି ହସିଲେ । ମୁଁ ମନରେ ଖୁବ୍ ଲଜ୍ଜା ପାଇଲି । ବାବାଙ୍କୁ ଗୁନ୍ଦା କଥାଟା ସୁଧୀର ଡାକ୍ତର କହିଥିଲେ । ମୁଁ ମନେ ମନେ ଭାବିଲି ଯେ, ଆଉ ଗୁନ୍ଦା ଆଦାୟ କରିବି ନାହିଁ । ଯୋଗମାୟା ଦେବୀଙ୍କୁ ସଫା ସଫା ମନା କରି ଦେବି । ମୁଁ ଆଳସ୍ୟ, ତନ୍ଦ୍ରା, ଜଡ଼ତା ଆଦି ଖରାପ ଗୁଣ ମାନଙ୍କର କେନ୍ଦ୍ର ହୋଇ ଉଠିଛି । ମା' ଗୋ ମୋତେ ମଣିଷ କର । ଆଳସ୍ୟ, ତନ୍ଦ୍ରା, ଇନ୍ଦ୍ରୀୟକୁ ଜୟ କରିବାକୁ ହେବ । ମା' ଗୋ ! ଶକ୍ତି ଦିଅ ।

॥ ୨୭।୧।୭୯ : ଶନିବାର ॥

ସମ୍ପୂର୍ଣ୍ଣ ଦିନଟି ବାଜେ ଭାବରେ ଗଲା । ଅପରାହ୍ନରେ ନନ୍ଦଲାଲ ସହିତ ପୋଲ ଆଡ଼କୁ ଗଲି । ଦୁବେଜୀଙ୍କ ସହିତ ଦେଖାହେଲା । ସେ ଆମମାନଙ୍କୁ ଚା ଖୁଆଇଲେ । ଶକର୍ତି ପୁଲିସ ମାନଙ୍କ ଭିତରେ ଜଣେ ପୁଲିସ ଉପରେ ହନୁମାନ ସବାର ହୋଇଥିଲା ସେ କଥା ଦୁବେଜୀ ଆମମାନଙ୍କୁ କହିଲେ ।

ସନ୍ଧ୍ୟା ପରେ ମୁଁ କିଛି ସମୟ ନାମ ଜପ କଲି । ମୁଁ ପ୍ରତିଜ୍ଞା କଲି ଏଇ ମୁହୂର୍ତ୍ତରୁ ଠାରୁ ମୁଁ ଆଉ ଆଗର ରାଜୁ ନୁହେଁ । ମୋର ଚରମ ଲକ୍ଷ୍ୟ ହେଲା ମା'ଙ୍କୁ ପାଇବା ଜଗନ୍ନାଥଙ୍କୁ ସାକ୍ଷାତ ଦର୍ଶନ କରିବା, ତାଙ୍କ ସହିତ କଥାବାର୍ତ୍ତା କରିବା । ମୁଁ ପରମାତ୍ମାଙ୍କର ଅଂଶ । ମୋ ଭିତରେ ଈଶ୍ୱରଙ୍କ ଶକ୍ତି ନିହିତ ହୋଇଅଛି । ମୋର ଏଇ ପ୍ରତିଜ୍ଞା ଶେଷ ପ୍ରତିଜ୍ଞା । ମୋର ପ୍ରତିଜ୍ଞା ପାଳନ ହେବ । ନ ହେଲେ ମୋର ଶରୀରକୁ ନଷ୍ଟ କରିବ । କୌଣସି କୁ ଜିନିଷ ମୋତେ ସ୍ପର୍ଶ କରିପାରିବ ନାହିଁ । ମୋର ଏଇ ପ୍ରତିଜ୍ଞା ଗୌତମ ବୁଦ୍ଧର ପ୍ରତିଜ୍ଞା ।

॥ ୨୮।୧୨।୭୯ : ରବିବାର ॥

ସକାଳେ ମୋତେ ବାବୁରାମ କହିଲା ଯେ ଯୋଗମାୟା ଦେବୀ ମୋତେ ଆଜି ସେଠାକୁ ଯିବାକୁ କହିଛନ୍ତି । ମୁଁ ପଚାରିଲି କାହିଁକି ? ବାବୁରାମ କହିଲା ଯେ ଯୋଗମାୟା ଦେବୀ ସୋମବାର ଦିନ ଗୌହାଟୀ ଚାଲିଯିବେ । ତା'ପରେ ଅନେକ ଦିନ ଦେଖା ହେବ ନାହିଁ ।

ମୁଁ ଖିଆ ପିଆ କରି ଗୋଧୂଳି ବେଳେ ଆଶ୍ରମକୁ ଗଲି । ମା' ଯୋଗମାୟା ଦେବୀ କହିଲେ ତୋର ଔଷଧ ନେଇ ଯାଆ । ମୁଁ କହିଲି ଠିକ୍ ଅଛି । ଆପଣ ନିତାଇ ଦା'ଙ୍କୁ କହିଦେବେ । ମୁଁ ନିତାଇ ଦା'ଙ୍କ ଠାରୁ ନେଇଯିବି । ନିତାଇ ମୋତେ ୨୦୦୨ ଇଟା କଥା କହିବାରୁ ମୁଁ କହିଲି ଯେ ମୁଁ ପଚାରି ବୁଝିବି । ଅଢ଼େଇଟାରେ ଚାଲି ଆସିଲି । ଅପରାହ୍ନରେ ବ୍ୟାଡମିଣ୍ଟନ ଖେଳିଲି । ଆଜି ଖେଳ ଖୁବ୍ ଜମି ଥିଲା । ସନ୍ଧ୍ୟାବେଳେ ମ୍ୟାଜିକ୍ ଦେଖିବାକୁ ଗଲୁ । ମୁଁ, ପ୍ରଣବ ଆଉ ଗୋପାଳ । ମୁଁ ଦେଖାଇଲି । ଆଜି ଯାଦୁ ଖେଳ ଭଲ ହେଲା । ରାତିରେ ଦୁଇଦିନ ହେଲା ସ୍ୱପ୍ନଦୋଷ ହେଉଅଛି । ଦୁଇଦିନ ହେଲା କାମ ଚିନ୍ତା ମଧ୍ୟ ଅଛି ।

॥ ୨୯।୧୨।୭୯ : ସୋମବାର ॥

୭ାଏଟରେ ଉଠିଲି । ଆଜି ଦିନଟି ମୋର ଭଲ ଭାବରେ ଯାଇନି । ଦୁଇ ଥର ଯାଗାରେ ମୋ ନିଜ ଦୋଷରୁ ଅପମାନିତ ହେଲି । ଟେବୁଲ ଟେନିସ ଖେଳିବା ବେଳେ ମୁଁ ମିରଜାମଲ୍ଲ ପ୍ରଭୃତିଙ୍କୁ 'ସ୍ମୋକର' କହିବାରୁ ମିରଜାମଲ୍ଲ ଖୁବ୍ ରାଗିଗଲା, ଆଉ କହିଲା ଯେ, ମୁଁ ତୁମର ବାପାର ପଇସାରେ ସିଗାରେଟ ଖାଏନାହିଁ ।

ଆଉଥରେ କ୍ରିକେଟ ପଡ଼ିଆରେ ପ୍ରଣବକୁ କହିଥିଲି ଯେ ତୋର ନାକରେ ବଲ ଲାଗିଲେ ତୁ 'ମାଓଡ଼ସେତୁଙ୍ଗ' ହୋଇଯିବୁ । ପ୍ରଣବ ଏ କଥାରେ ଖୁବ୍ ଆଘାତ ପାଇଲା । ଆଉ ମୋତେ ମାରି ମୋତେ ଅନେକ ମଣିଷଙ୍କ ଆଗରେ ଅପମାନିତ କଲା । ମୁଁ କିନ୍ତୁ ଦୁଇଥର କଥା ଉଡ଼ାଇ ଦେଲି । କିନ୍ତୁ ମନେ ମନେ ଖୁବ୍ ଲଜ୍ଜା ପାଇଲି ।

ମୁଁ ଟେବୁଲ ଟେନିସରେ କିଛି ଦୂର ଆଗେଇଛି । ବର୍ତ୍ତମାନ ଭଲ ଭାବରେ ଖେଳି ପାରେ । ଆଗ ଅପେକ୍ଷା ଅନେକ ଭଲ ଭାବରେ ପାରେ । ଆଜି ମୁଁ ଅନେକ ପିଲାଙ୍କ ମନରେ ଆଘାତ ଦେଲି । ତା' ଭିତରେ ପ୍ରଣବ, ମିନ୍ଦ୍ରୋମଲ, କମଲ ଆଦି ପ୍ରଧାନ । ନାମ ଜପ ମାତ୍ର ୨।୪ ମିନିଟ୍ କଲି । ତା ମଧ୍ୟ ଅନ୍ୟମନସ୍କ ଭାବରେ । ସଦ୍‌ଗ୍ରନ୍ଥ ଗୋଟିଏ ମଧ୍ୟ ପଢ଼ିଲି ନାହିଁ । କଲେଜର ପଢ଼ା ତ ହେଉନାହିଁ । କାମଭାବ ଆଜି ବେଶ୍ ଅଛି ।

ମୋର ଫୁଲ ବଗିଚା ଦେଖିନାହିଁ ଅନେକ ଦିନ ହେଲା । ଗୋପାଳ ପାଖରୁ ମୁଁ ଅନେକ ଦୁର୍ଗୁଣ ଶିଖିଛି । ତା' ଭିତରେ ଅନ୍ୟକୁ ସମାଲୋଚନା କରି ତା' ମନରେ ଦୁଃଖ ଦେବା ପ୍ରଧାନ । ଏଇଟା ଗମ୍ଭୀରତା ଆଉ ସମ୍ମାନ ନଷ୍ଟ କରେ । ଆଉ ଅନେକଙ୍କ ସହିତ ଝଗଡ଼ା ହୁଏ । ଗୋପାଳ ପାଖରୁ ଆଣିଥିବା ଦୁର୍ଗୁଣଟିକୁ ଆଜିଠାରୁ ଦୂର କଲି । କାଲିଠାରୁ ମୋର ରୁଟିନ୍‌ଟି ଅନ୍ୟ ପ୍ରକାର ହେବ ।

|| ୩୦।୧୨।୭୯ : ମଙ୍ଗଳବାର ||

ସକାଳର ସମୟରେ ଉଠିଲି । କେଇ (ଦୁଇ ତିନି) ମିନିଟ୍ ନାମ ଜପ କଲି । ଯୋଗମାୟା ଦେବୀଙ୍କ ଫଟୋକୁ ମୁଁ ବନ୍ଧାଇ ଦେଇଛି । ଆଜି ଅଳ୍ପ ସଞ୍ଚିତ ରହିବାରୁ କାଲିପରି ମୁଁ ଅପମାନିତ ହୋଇନି । କିନ୍ତୁ ସମ୍ପୂର୍ଣ୍ଣ ଭାବରେ ସଞ୍ଚିତ ବର୍ତ୍ତମାନ ହୋଇ ପାରିନାହିଁ । ବାବୁରାମର ମନରେ ଆଘାତ ଦେଲି । ଆଜି ସାରା ଦିନ ଖେଳା ଖେଳିରେ ଚାଲିଯାଇଛି ।

ପ୍ରଣବ ଆଉ ଜଗଦ୍ବୀପେନ୍ଦ୍ର ଭିତରେ ପୁଣି କଥାବାର୍ତ୍ତା ଚାଲୁ ହୋଇଯାଇଛି । ସେମାନେ ସରସ୍ୱତୀ ପୂଜା କରିବା ପାଇଁ ସିଦ୍ଧାନ୍ତ ନେଲେ ଏବଂ କ୍ଲବକୁ ପୁଣି ପ୍ରତିଷ୍ଠା କରିବା ପାଇଁ ପ୍ରସ୍ତାବ ତୋଳିଲେ । ମୁଁ କୌଣସି ମତ ଦେଲିନି । କେବଳ କହିଲି ଭାବି ଦେଖେ । ରାତି ଶେଷରେ ହୀରାଲାଲ ସହିତ କାମପୂର୍ତ୍ତି ସ୍ୱପ୍ନ ଦେଖିଲି । କିନ୍ତୁ ଭଗବାନଙ୍କ କୃପାରୁ ବୀର୍ଯ୍ୟ ପଡ଼ିନାହିଁ ।

|| ୩୧।୧୨।୭୯ : ବୁଧବାର ||

ଆଜି ଏ ବର୍ଷର ଶେଷ ଦିନ । କାଲିଠାରୁ ନୂଆ ଉତ୍ସାହରେ କାମ ଆରମ୍ଭ କରିବ । କିନ୍ତୁ କେତେ ଦୂର ଆଗେଇ ପାରିବ ସେଇଟା ମା'ର ଇଚ୍ଛା । ଆଜି ପ୍ରଣବ ଆଉ ଜଗଦ୍ବୀପେନ୍ଦ୍ର ସରସ୍ୱତୀ ବିଷୟରେ ମୋର କ ମତ ଜାଣିବାକୁ ଚାହିଁଲେ । ମୁଁ

କହିଲି ସଙ୍କିସ୍ଥ ଅଂଶ ଗ୍ରହଣ କରିପାରିବ ନାହିଁ ।

କାଲିଠାରୁ ମୋ ଜୀବନକୁ ନୂଆ ଢ଼ାଞ୍ଚାରେ ଗଢିବି । ମା ଗୋ ! ଶକ୍ତି ଦିଅ । ରାତିରେ ସ୍ୱପ୍ନରେ ବିଜୟଲକ୍ଷ୍ମୀକୁ ଦେଖିଲି । କିନ୍ତୁ ବୀର୍ଯ୍ୟପାତ ହୋଇନି ।

॥ ୧।୧।୭୦ : ଗୁରୁବାର ॥

ଆଜି ନୂଆ ବର୍ଷର ପ୍ରଥମ ଦିନ । କିନ୍ତୁ ମୁଁ ଆଜି ଅସୁଖୀ । କାହିଁକି ନା, ମୋର ଘନିଷ୍ଠ ବନ୍ଧୁ ପ୍ରଣବ ସହିତ କଜିଆ ହୋଇଛି । ଘଟଣାଟି ଏହିପରି ।

ସକାଳ ୧୦।୩୦ ବେଳେ ପ୍ରଣବ ଆଉ ଗୋପାଳ ଆସିଲେ । ମୁଁ କାଲିର ମିଟିଂ ବିଷୟରେ ପଚାରିଲି । ( କାଲି ସରସ୍ୱତୀ ପୂଜା ସମ୍ବନ୍ଧରେ ମିଟିଂ ବସିଥିଲା । କିନ୍ତୁ ପ୍ରଣବ କହିବା ସତ୍ତ୍ୱେ ମୁଁ ମିଟିଂ ଯାଇନଥିଲି । ପ୍ରଣବ ପୂଜା କମିଟିର ସମ୍ପାଦକ ଆଉ ଜଗଦୀପେନ୍ଦ୍ର ସଭାପତି ଭାବେ ସ୍ଥିର କରାଗଲା । )

ମୁଁ ପ୍ରଣବକୁ କହିଲି ସରସ୍ୱତୀ ପୂଜା ପରେ ଯେଉଁ ଟଙ୍କା ବଳିବ, ସେଥିରୁ ମୋର ରବୀନ୍ଦ୍ରଜୟନ୍ତୀର ବାକି ଟଙ୍କା ଦେବାର ବ୍ୟବସ୍ଥା କରିବ । ସେତେବେଳେ ପ୍ରଣବ କହିଲା, ରବୀନ୍ଦ୍ରଜୟନ୍ତୀ ସମୟରେ ଯେଉଁ ଟଙ୍କା ପ୍ରମୋଦ ଦୋକାନରେ ବାକି ହୋଇଥିଲା, ସେ ସବୁ ଦିଆହେବ । କିନ୍ତୁ ମୋ ଟଙ୍କା ପାଇଁ କ୍ଲବ ରିସ୍କ ନେବନାହିଁ । ମୁଁ ରବୀନ୍ଦ୍ର ଜୟନ୍ତୀ ସମୟରେ କ୍ଲବର ସମ୍ମାନ ରଖିବାକୁ ଟଙ୍କା ଦେଲି । ଆଉ ବର୍ତ୍ତମାନ ପ୍ରଣବ କହୁଛି ଯେ ସେ ଟଙ୍କା ପାଇଁ କ୍ଲବର କିଛି ଯାଏ ଆସେ ନି । ମୋର ମୁଣ୍ଡ ଗରମ ହୋଇଗଲା ଏ କଥାରେ । ଆଉ ମୁଁ ସେତେବେଳେ କହିଲି, ତା'ହେଲେ ମୋ ସହିତ 'ଅଗ୍ରଦୂତ'ର କୌଣସି ସମ୍ପର୍କ ନାହିଁ । ପ୍ରଣବ କହିଲା କାହାର ପାଇଁ କ୍ଲବ ଅଟକି ଯିବନି । ତା'ପରେ ପ୍ରଣବ ସହିତ ମୋର ଖୁବ୍ ଯୁକ୍ତିତର୍କ ଝଗଡ଼ା ହେଲା । 'ଅଗ୍ରଦୂତ' କ୍ଲବ ଭାଙ୍ଗି ଯିବାର କାରଣ ପ୍ରଣବ ମୋତେ ଦାୟୀ କଲା । ଆଉ ମୁଁ ପ୍ରଣବକୁ ଦାୟୀ କରି ତର୍କା ତର୍କି ଆରମ୍ଭ କରିଦେଲି । ପ୍ରଣବର ଏଇ ବ୍ୟବହାର ପାଇଁ ଆଜି ମୁଁ ବହୁତ ଦୁଃଖ ପାଇଲି ।

ଆଜି ସକାଳ ୭।୪୫ରେ ଉଠିଥିଲି । ଆଉ କିଛି ସମୟ ନାମ ଜପ କରିଥିଲି । ଦ୍ୱିପ୍ରହରେ ଟେବୁଲ ଟେନିସ ଖେଳିଲି । ସନ୍ଧ୍ୟାରେ କ୍ରିକେଟ ଖେଳିଲି । କ୍ରିକେଟ ପଡ଼ିଆରେ ପ୍ରଣବ ଆଉ ଗୋପାଳ ସହିତ ଦେଖା ହେଲା । ମୁଁ, ଗୋପାଳ, ବାବୁରାମ

ଆଉ ପ୍ରଣବ 'ନଭ ଇସ୍ବର' ଉପଲକ୍ଷେ ଅଙ୍କା ତାମସା କଲୁ । ମୁଁ ଉପରେ ଉପରେ ହସ୍‌ରେ ଯୋଗ ଦେଇଥିଲି ସତ, ମୋ ମନ ସକାଳର କଥା ପାଇଁ ବଡ଼ ଖରାପ ଲାଗୁଥିଲା ।

ସକାଳ ଘଟଣାର ପୁନରାବୃତ୍ତି ହେଲା । ପୁଣି ପ୍ରଣବ ସହିତ ମୋର ବଡ଼ ଝଗଡ଼ା ଲାଗିଲା ଗୋବିନ୍ଦ ବାବୁର ଦୋକାନ ସମ୍ମୁଖରେ । ମୁଁ ପ୍ରଣବକୁ କହିଲି, ମୁଁ ମୋର ଶେଷ ସିଦ୍ଧାନ୍ତ କାଲି ସକାଳ ୮ଟାରେ କହିବି । ଏକଥା କହି ସେଠାରୁ ଚାଲି ଆସିଲି । ସନ୍ଧ୍ୟା ସାଢ଼େ ୬ଟାରେ ଘରେ ପହଞ୍ଚିଲି ।

ଫେରି କରିବାରୁ ମା', ବାବା ଦୁଇ ଚାରିଟା କଥା ଶୁଣେଇଲେ । ମୁଁ ମଧ୍ୟ ଗରମ୍ ଗରମ କିଛି କଥା ଶୁଣେଇ ଦେଲି । ଏମିତ ବି ମୋର ମୁଣ୍ଡ ଠିକ୍ ନଥିଲା । ଘରକୁ ଆସିବା ପରେ ମଧ୍ୟ ଝଗଡ଼ାଠାରୁ ମୋ ମନକୁ ଦୂରରେ ରଖିପାରିଲି ନାହିଁ । ବର୍ଷର ପ୍ରଥମ ଦିନଟି ଆଜି ମୋର ଏମିତ ଯାଇଛି । ପ୍ରଣବର ମନକୁ ଆଜି ମୁଁ ବୁଝିପାରିଲି । ବାବୁରାମ ସହ ମୋର ମନୋମାଳିନ୍ୟ ହୋଇଛି ବୋଲି ଶୁଣିଲି ଫେଲିବା ବେଳେ ।

ଆଜି ଇଂରାଜୀର ପାଠ୍ୟବହି ଖଣ୍ଡିଏ ପଢ଼ିବାକୁ ବାହାର କଲି । ଗୋଟିଏ ଦୁଇଟା ଲାଇନ ପଢ଼ିଲି । ଭଲ ଲାଗିଲା ନାହିଁ । ପୁଣି ରଖି ଦେଲି । ରାତିରେ ସ୍ବପ୍ନଦୋଷ ହୋଇଛି ।

‖ ୨।୧।୭୦ : ଶୁକ୍ରବାର ‖

ଆଜି ସାଢ଼େ ସାତଟାରେ ଉଠିଲି । ଆଠଟାରେ ପ୍ରଣବ ଆସିଲା । ମୁଁ ମିଳା ମିଶା କରି ଦେବାଟାକୁ ହିଁ ଭଲ ବୋଲି ଭାବିଲି । ପ୍ରଣବକୁ କହିଲି କାଲି ଯା' ହୋଇଛି, ହୋଇ ଯାଇଛି । ପ୍ରଣବ ଏକଥା କହିଲା । ତା'ପରେ କ୍ଲବର ଉନ୍ନତି ବିଷୟରେ ଆଲୋଚନା ଆରମ୍ଭ ହେଲା । କ୍ଲବର ସ୍ଥାନ E. N. D. ଅଫିସ ପାଖରେ ସ୍ଥିର କରା-ହେଲା ।

କଲେଜକୁ ଗଲି । ଗୋଟିଏ ମାତ୍ର କ୍ଲାସ ହେଲା । ଆଶ୍ରମକୁ ଗଲି । ସାଓର ମଲ୍ଲିର ଔଷଧ ସୋମବାରରେ ଦେବେ ବୋଲି ଯୋଗମାୟା ଦେବୀ କହିଲେ । ନନ୍ଦଲାଲ ସହିତ ସେଠି ଦେଖାହେଲା ।

ଅଜି ସମ୍ପୂର୍ଣ୍ଣ ଦିନଟି ମୋର ମୁଣ୍ଡ ଗରମ । ଆଜି ଜିଲ୍ଲା ପାଠାଗାରରୁ କାଠିଆ ବାବାର ଜୀବନୀ ଆଣିଛି । ଡାଏରୀ ଲେଖାଲେଖି କରୁ କରୁ ରାତି ୧୧ଟା ବାଜିଲା । ତା'ପରେ ଶୋଇ ପଡ଼ିଲି ।



---

*Publication Data* :

**JANE SADHARANA KISHORERA DI RY.**

Author — Rajendra Prasad Khatawat. Oriya Translation — Bharat Bhusan Mohanty, Department of English, C. R. College, Golakganj (Assam). First Published : October 1991. Printed at Santoshi Printers, Rasulgarh, Bhubaneswar Orissa. Publiseed by - S, N. Jagadeba for Mahanadi Books, Mulyayan Vihar, G.G,P Colony, Rasulgarh, Bhubaneswar - 761010, Orissa, Price : Rs, 30.00 only. Five Dollars.